# କବି ବନମାଳୀ ଦାସ




ଓଡ଼ିଶା ସାହିତ୍ୟ ଏକାଡେମୀ

ଭୁବନେଶ୍ୱର

# କବି ବନମାଳୀ ଦାସ

ଶ୍ରୀ ନୀଳମଣି ମିଶ୍ର




ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର

# କବି ବନମାଳୀ ଦାସ

ଲେଖକ : ଶ୍ରୀ ନୀଳମଣି ମିଶ୍ର

●

ପ୍ରକାଶକ :
ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର ୭୫୧୦୧୪

●

ପ୍ରଥମ ପ୍ରକାଶ ୧୯୮୦

●

ମୁଦ୍ରଣ :
ଅଗ୍ରଣୀ ପ୍ରେସ୍,
ଶିଳ୍ପାଞ୍ଚଳ, ଭୁବନେଶ୍ୱର-୧

●

**Kavi Banamali Das**
**By : Nilamani Mishra**
Publisher : Orissa Sahitya Akademi
BHUBANESWAR-751014

ମୂଲ୍ୟ—ପାଞ୍ଚଟଙ୍କା ପଚାଶ ପଇସା

**PRICE : Rs.5.50**

# ଆଦ୍ୟ କଥନ

ଓଡ଼ିଶାର ବରେଣ୍ୟ ସାହିତ୍ୟିକଙ୍କର ସଂକ୍ଷିପ୍ତ ଜୀବନୀ ଓ ଅମୂଲ୍ୟ କୃତିର ସମ୍ୟକ୍ ପରିଚୟ ସଂବଳିତ ପୁସ୍ତକ ସାଧାରଣ ପାଠକ ପକ୍ଷେ ଅପରିହାର୍ଯ୍ୟ । ଓଡ଼ିଆ ପୁସ୍ତକ ପ୍ରକାଶନ କ୍ଷେତ୍ରରେ ଏପରି ପୁସ୍ତକର ଯଥେଷ୍ଟ ଅଭାବ ରହିଛି । ଏ ଅଭାବ ପୂରଣ ପାଇଁ ଏକାଡେମୀ ପକ୍ଷରୁ ପ୍ରଥମ ପଦକ୍ଷେପ ସ୍ୱରୂପ ରୀତି-ଯୁଗୀୟ ଓଡ଼ିଆ ସାହିତ୍ୟର ମହାନ୍ କାବ୍ୟ-ସ୍ରଷ୍ଟା କବି ବନମାଳୀ ଦାସଙ୍କ ଜୀବନୀ ଓ ସାହିତ୍ୟର ପରିଚୟ ସଂବଳିତ ଏହି ପୁସ୍ତକଟି ପ୍ରକାଶ କରଗଲ । ଏହା ପାଠକ ଓ ସୁଧୀ ସମାଜରେ ଆଦୃତ ହେବ ବୋଲି ଆଶା ।

ରାଇଚରଣ ଦାସ
ସଂପାଦକ

ମାନଙ୍କ କବଳରୁ ସମାଜକୁ ମୁକୁଳାଇବା ଏବଂ ସାମାଜିକ ରୁଚିକୁ ବୈଷ୍ଣବ ଧର୍ମାଭିମୁଖୀ କରାଇବା ଉଦ୍ଦେଶ୍ୟରେ, "ଶ୍ରୀରାଧାକୃଷ୍ଣଙ୍କ କେଳିକଳା-ବିଳାସ"କୁ ଅବଲମ୍ବନ କରି ବିଶ୍ୱବିଖ୍ୟାତ ଗୀତିକାବ୍ୟ "ଗୀତ ଗୋବିନ୍ଦ" ରଚନା କରିଥିଲେ । ତାଙ୍କ କାବ୍ୟର ଅନୁସରଣ ତଥା ଅନୁକରଣରେ କବିଚନ୍ଦ୍ର ରାୟ ଦିବାକରଙ୍କ ଦ୍ୱାରା ଲିଖିତ ତଥା ସୂର୍ଯ୍ୟବଂଶର ଗଜପତି ପୁରୁଷୋତ୍ତମ ଦେବଙ୍କ ନାମରେ ଭଣିତ "ଅଭିନବ ଗୀତଗୋବିନ୍ଦ" କାବ୍ୟ ଲିଖିତ ହୋଇଥିଲା ।

ଶ୍ରୀରାଧାକୃଷ୍ଣଲୀଳାକୁ ଉପଜୀବ୍ୟ ରୂପେ ଗ୍ରହଣ କରି ରାୟ ରାମାନନ୍ଦ ପଟ୍ଟନାୟକ 'ଶ୍ରୀଜଗନ୍ନାଥ ବଲ୍ଲଭ', ରଘୂତ୍ତମ ତୀର୍ଥ 'ମୁକୁନ୍ଦ ବିଳାସ' କବିଚନ୍ଦ୍ର ନିତ୍ୟାନନ୍ଦ 'ଶ୍ରୀକୃଷ୍ଣ ଲୀଳାମୃତ', କବି ଅନାଦି ମିଶ୍ର 'ରାସ-ଗୋଷ୍ଠୀରୂପକ' ଜୀବଦେବଙ୍କ ପୁତ୍ର 'ଜୟଦେବ ପୀୟୂଷ ଲହରୀ ବା ବୈଷ୍ଣବା-ମୃତ ଗୋଷ୍ଠୀରୂପକ' ପ୍ରଭୃତି କାବ୍ୟ ନାଟିକା ଆଦି ରଚନା କରିଥିଲେ ।

ସଂସ୍କୃତ ସାହିତ୍ୟରେ ତିନୋଟି ଆଖ୍ୟାନ ମୂଳକ ପୁସ୍ତକ ଆର୍ଷ-ରାମାୟଣ, ମହାଭାରତ ତଥା ଶ୍ରୀମଦ୍ ଭାଗବତ ଅବଲମ୍ବନରେ କବୀନ୍ଦ୍ର ମାର୍କଣ୍ଡେୟ 'ଦଶଗ୍ରୀବବଧ ମହାକାବ୍ୟ', କବିଚନ୍ଦ୍ର ଦିବାକର ମିଶ୍ର 'ଭାରତାମୃତ ମହାକାବ୍ୟ', କବିଡିଣ୍ଡିମ ଜୀବଦେବାଚାର୍ଯ୍ୟ 'ଭକ୍ତିଭାଗବତ ମହାକାବ୍ୟ' ରଚନା କରିଥିଲେ । ଏତଦ୍ ବ୍ୟତୀତ ଆହୁରି ବହୁ ଖ୍ୟାତନାମା ପଣ୍ଡିତ ସଂସ୍କୃତରେ ବହୁ କାବ୍ୟ, ନାଟକ, ନାଟିକା, ଖଣ୍ଡକାବ୍ୟ ଆଦି ରଚନା କରି ଓଡ଼ିଶାର ସାହିତ୍ୟିକ ପୃଷ୍ଠଭୂମିର ମୁଖୋଜ୍ଜ୍ୱଳ କରିଥିଲେ ।

ଓଡ଼ିଶାରେ ଗଙ୍ଗସାମ୍ରାଜ୍ୟର ଆରମ୍ଭ ଯୁଗରୁ ଓଡ଼ିଆଭାଷା ଦାନପତ୍ର ଆଦି ବ୍ୟାବହାରିକ କ୍ଷେତ୍ରରେ ପ୍ରଯୁଜ୍ୟ ହୋଇଥିବାର ପ୍ରମାଣ ମିଳୁଥିବାରୁ, ସାହିତ୍ୟ କ୍ଷେତ୍ରରେ ତା'ର ପ୍ରୟୋଗ ହୋଇଥିବା ଅସମ୍ଭବ ନୁହେଁ । କିନ୍ତୁ ସେ ଯୁଗର ନାଥସାହିତ୍ୟ ତଥା ଶିଶୁବେଦ ବ୍ୟତୀତ ଅନ୍ୟ କୌଣସି ପ୍ରମାଣ ଆମର ହସ୍ତଗତ ହୁଏ ନାହିଁ । ପ୍ରକୃତରେ ଗଜପତିମାନଙ୍କ (ଖ୍ରୀ: ଅ: ୧୪୩୫ —୧୫୪୦) ଅମଳର ଓଡ଼ିଆସାହିତ୍ୟ ପ୍ରାରମ୍ଭିକ ଯୁଗର ସାହିତ୍ୟରୂପେ ଆମ ଆଗରେ ପ୍ରମାଣସ୍ୱରୂପ ରହିଛି । ଗଜପତି କପିଳେନ୍ଦ୍ର ଦେବଙ୍କ

ସମୟର କବି ସାରଳା ଦାସ ଓଡ଼ିଶାର ପ୍ରତିନିଧି କବି ରୂପେ ପରିଚିତ । ତାଙ୍କ ରଚିତ ମହାଭାରତ, ରାମାୟଣ, ଚଣ୍ଡୀ ପୁରାଣ ଓ ବିଲଙ୍କା ରାମାୟଣ ସମୃଦ୍ଧ ଓଡ଼ିଆ ସାହିତ୍ୟର ପ୍ରତୀକରୂପେ ସାହିତ୍ୟର ବିଭିନ୍ନ ବିଭବକୁ ପ୍ରଭାବିତ କରେ ।

ସାରଳା ଦାସ ସର୍ବପ୍ରଥମେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ମହାଭାରତର ବିଭିନ୍ନ ସ୍ଥାନରେ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ଶ୍ରୀକୃଷ୍ଣଙ୍କ ସହିତ ତାଙ୍କର ଅଭେଦତ୍ୱ ପରିକଳ୍ପନା କରିଥିଲେ । ମହାଭାରତ ଯୁଗର ଶ୍ରେଷ୍ଠ ଲୀଳାମୟ ଶ୍ରୀକୃଷ୍ଣ, ସାରଳାଙ୍କ ଦୃଷ୍ଟିରେ ଶ୍ରୀଜଗନ୍ନାଥଙ୍କ ବ୍ୟତୀତ ଅନ୍ୟ କେହି ନୁହନ୍ତି ।

ପରେ ପ୍ରତାପରୁଦ୍ର ଦେବଙ୍କ ସମସାମୟିକ ପଞ୍ଚସଖା— ବଳରାମ, ଅଚ୍ୟୁତ, ଜଗନ୍ନାଥ, ଯଶୋବନ୍ତ ଓ ଅନନ୍ତଙ୍କ ଭକ୍ତିଧାରାରେ ଶ୍ରୀଜଗନ୍ନାଥଙ୍କ ମାହାତ୍ମ୍ୟ ବିଶେଷ ଭାବରେ ପ୍ରକଟିତ ହେଲା । ସେମାନେ ସାହିତ୍ୟ ମାଧ୍ୟମରେ ଜ୍ଞାନମିଶ୍ରା ଭକ୍ତିଭାବର ପ୍ରଚାର କରିବା ସଙ୍ଗେ ସଙ୍ଗେ ଶ୍ରୀଜଗନ୍ନାଥଙ୍କ ମାହାତ୍ମ୍ୟ, ତାଙ୍କର ଶୂନ୍ୟବ୍ରହ୍ମ-ସ୍ୱରୂପ ସମ୍ବନ୍ଧରେ ଜନସାଧାରଣଙ୍କୁ ସ୍ଥୂଳ ଧାରଣା ଦେଲେ ।

ପଞ୍ଚସଖାଙ୍କ ପୂର୍ବରୁ ସାହିତ୍ୟ ଯେପରି ଦରବାରୀ ସାହିତ୍ୟରେ ପରିଣତ ହୋଇଥିଲା, ତାହା ସେ ଯୁଗରେ ଆଉ ବେଶୀକାଳ ତିଷ୍ଠି ପାରିଲା ନାହିଁ । ଜନତା ଜନାର୍ଦ୍ଦନର ସେବାରେ ପଞ୍ଚସଖାଗଣ ସାହିତ୍ୟକୁ ବିନିଯୋଗ କରିବା ସଙ୍ଗେ ସଙ୍ଗେ ବେଦ, ବେଦାଙ୍ଗ, ଦର୍ଶନର ଗହନ ତଥ୍ୟକୁ ସର୍ବସାଧାରଣଙ୍କ ବୋଧଗମ୍ୟ—ଭାଷାରେ ପରିପ୍ରଚାର କରିବାରେ ଅଗ୍ରଦୂତ ସାଜିଥିଲେ । ରାମାୟଣ, ହରିବଂଶ, ଶ୍ରୀମଦ୍ ଭାଗବତ ଆଦି ଆଖ୍ୟାନ ଗ୍ରନ୍ଥଗୁଡ଼ିକ ସଂସ୍କୃତଜ୍ଞ ପଣ୍ଡିତମାନଙ୍କର ଏକାଧିକାରରୂପେ ଅସ୍ଥାନ ଜମାଇଥିଲା । କିନ୍ତୁ ପଞ୍ଚସଖାଙ୍କ ମଧ୍ୟରୁ ବଳରାମ ଦାସ, ଅଚ୍ୟୁତାନନ୍ଦ ଓ ଅତିବଡ଼ୀ ଜଗନ୍ନାଥ ଦାସ ସେହି ତିନିଖଣ୍ଡି ଗ୍ରନ୍ଥକୁ ଜନସାଧାରଣଙ୍କ ହାତରେ ଅର୍ପଣ କରିବା ନିମିତ୍ତ, ସେଗୁଡ଼ିକର ଭାବାନୁବାଦ କରିଥିଲେ । ଅବଶ୍ୟ ସେଥିଲାଗି ସେମାନଙ୍କୁ ନାନାପ୍ରକାର ଘାତ-ପ୍ରତିଘାତରେ ସମ୍ମୁଖୀନ ହେବାକୁ ପଡ଼ିଥିଲା । କିନ୍ତୁ ସେମାନଙ୍କ ଦୃଢ଼ ସାଧନା, ଜନସାଧାରଣଙ୍କ ସେବାରେ ଆତ୍ମନିୟୋଗ

ଲାଗି ଐକାନ୍ତିକ ନିଷ୍ଠା ତଥା ଜନତାର ଅକୁଣ୍ଠ ସମର୍ଥନ ଯୋଗୁଁ, ସେମାନେ ସଂସ୍କୃତ ଭାଷା ଓ ସାହିତ୍ୟର ସୁଦୃଢ଼ ପ୍ରାଚୀର ଭଙ୍ଗକରି ଓଡ଼ିଆ ଭାଷା ଓ ସାହିତ୍ୟକୁ ଦେଶରେ ପ୍ରଚ୍ଛର କରାଇ ପାରିଥିଲେ । ସେମାନଙ୍କ ରଚନାର ମୂଳଉତ୍ସ ଥିଲା ଭକ୍ତି ଏବଂ ତତ୍ତ୍ୱ ସହିତ ମିଶ୍ରିତ ଥିଲା, ଶ୍ରୀଜଗନ୍ନାଥଙ୍କ ପ୍ରତି ଅନନ୍ୟସାଧାରଣ ଶ୍ରଦ୍ଧା । ସେମାନେ ସଂସ୍କୃତ କବିମାନଙ୍କ ଦ୍ୱାରା ପ୍ରବର୍ତ୍ତିତ ରୂଢ଼ିବାଦକୁ ସମୂଳେ ନଷ୍ଟକରି, ସାହିତ୍ୟ ମାଧ୍ୟମରେ ଜନସାଧାରଣଙ୍କୁ ଉଦାରଚାରୀ ଶିକ୍ଷା ଦେଇଥିଲେ । ପଞ୍ଚସଖାଙ୍କର ସେହି ମାଟି ସାହିତ୍ୟ ମାଧ୍ୟମରେ ଜନସାଧାରଣଙ୍କ ଠାରେ ପହଞ୍ଚି ପାରିଥିଲା । ଧୀରେ-ଧୀରେ ରୂଢ଼ି-ବାଦ ରୂପକ ସୁଦୃଢ଼ ପ୍ରାଚୀର ଧୂଳିସାତ୍ ହୋଇ ସାହିତ୍ୟ, ଦରବାରୀ ସାହିତ୍ୟ ସ୍ତରରୁ ବିଚ୍ଛିନ୍ନ ହୋଇ 'ଗଣ ସାହିତ୍ୟ'ରେ ପରିଣତ ହୋଇଥିଲା ।



# ଓଡ଼ିଆ ସାହିତ୍ୟରେ ଭକ୍ତିଧାରା

ଓଡ଼ିଆ ସାହିତ୍ୟରେ ଭକ୍ତିଧାରାର ବିକାଶ ସାରଳା ଦାସଙ୍କଠାରୁ ମୁଖ୍ୟତଃ ଆରମ୍ଭ ହୋଇଛି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ବ୍ୟାସକବି ସାରଳା ଦାସ ରାମାୟଣ, ଚଣ୍ଡୀପୁରାଣ ଓ ମହାଭାରତ ଆଦି ପୁସ୍ତକ ରଚନା କରିଥିଲେ ହେଁ, ସେଗୁଡ଼ିକର ମଙ୍ଗଳାଚରଣରେ ଭକ୍ତିଭାବ-ଦ୍ୟୋତକ ସ୍ତୁତିମାନ ବିଭିନ୍ନ ଦେବଦେବୀଙ୍କ ଉଦ୍ଦେଶ୍ୟରେ କରିଛନ୍ତି । ତାଙ୍କ ରଚିତ ରାମାୟଣର ମୁଖ୍ୟ ପ୍ରତିପାଦ୍ୟ ବିଷୟ ହେଉଛି ରାମ । କିନ୍ତୁ ସାରଳା ଦାସ ରାମାୟଣ ରଚନାର ପ୍ରାରମ୍ଭରେ ଗଣେଶଙ୍କୁ ବିଘ୍ନନାଶକ ରୂପେ ସ୍ତୁତି କରି ବିଷୟ ବସ୍ତୁର ଆରମ୍ଭ କରିଛନ୍ତି । ଗ୍ରନ୍ଥର ଶେଷ ପର୍ଯ୍ୟନ୍ତ ସେ ଆଉ କୌଣସି ଠାରେ କୌଣସି ଦେବଦେବୀଙ୍କୁ ସ୍ତୁତି ନ କରି କେବଳ ବିଷୟବସ୍ତୁର ସାରବତ୍ତା ଉପରେ ଅଧିକ ଦୃଷ୍ଟି ଦେଇ ଗ୍ରନ୍ଥ ସମାପ୍ତ କରିଛନ୍ତି ।

ଚଣ୍ଡୀପୁରାଣର ରଚନା ସମୟରେ କବି ସାରଳା ଦାସ ଅନୁରୂପ ସ୍ତୁତି ଶ୍ରୀଗଣେଶଙ୍କ ଉଦ୍ଦେଶ୍ୟରେ ଜଣାଇ ପୁସ୍ତକ ଆରମ୍ଭ କରିଛନ୍ତି । ଖୁବ୍ ସମ୍ଭବତଃ ରାମାୟଣ ପୁସ୍ତକଟି ତାଙ୍କର ପ୍ରାରମ୍ଭିକ ରଚନା ହୋଇଥିବାରୁ, ସେ ପୁସ୍ତକର ମଙ୍ଗଳାଚରଣରେ ଗଣେଶଙ୍କୁ ବିଶେଷ ସ୍ତୁତି କରି ନାହାନ୍ତି । କିନ୍ତୁ "ଚଣ୍ଡୀପୁରାଣ"ରେ ତାଙ୍କର ଭକ୍ତିଭାବନା ପଲ୍ଲବିତ ହୋଇଛି । ଚଣ୍ଡୀପୁରାଣରେ କବି ଗଣେଶଙ୍କ ସ୍ତୁତି-ପ୍ରକରଣରେ ତାଙ୍କର ଚରିତାବଳୀ କୀର୍ତ୍ତନ କରି, ସେ କପରି ଓଁକାର ମୂର୍ତ୍ତି, କାର୍ତ୍ତିକେୟଙ୍କ-ଠାରୁ ବଳଶାଳୀ, ବୁଦ୍ଧିମାନ ତଥା ଅଷ୍ଟାଦଶ ପୁରାଣର ଆଦି ଲେଖକ, ସେ ବିଷୟରେ ସାରଳା ଦାସ ସମୁଚିତ ବର୍ଣ୍ଣନା କରିଛନ୍ତି । ଚଣ୍ଡୀପୁରାଣ ପୁସ୍ତକଟି ମୁଖ୍ୟତଃ ମାର୍କଣ୍ଡେୟପୁରାଣାନ୍ତର୍ଗତ 'ସପ୍ତଶତୀଚଣ୍ଡୀ'ର ଅବଲମ୍ବନରେ ଲିଖିତ ହୋଇଥିବାରୁ ସେଥିରେ ଦେବୀ ମହାମାୟୀ ମା ଦୁର୍ଗାଙ୍କର ସ୍ତୁତି ଯତ୍ର ତତ୍ର ସନ୍ନିବିଷ୍ଟ ହୋଇଛି । କିନ୍ତୁ ଗଣେଶଙ୍କ ବନ୍ଦନା କବି ଗ୍ରନ୍ଥ-ରଚନାର ପ୍ରାରମ୍ଭରେ କରିଥିବାରୁ, ବାସ୍ତବରେ ତାଙ୍କର ଭକ୍ତିଅର୍ଘ୍ୟ

ଗଣେଶଙ୍କ ପାଦରେ ଅର୍ପିତ ହୋଇଛି । ତେଣୁ ଚଣ୍ଡୀପୁରାଣର ଆରମ୍ଭ ପଙ୍କ୍ତିରେ ସେ ଲେଖିଛନ୍ତି :—

"ବନ୍ଦଇ ସେ ସର୍ବବିଘ୍ନ ଖଣ୍ଡନ୍ତା ଦେବରାଜ ।
ଦ୍ରୁଣଲେ ସୁଫଳ ଯେ ପ୍ରସନ୍ନେ ସୁରକାର୍ଯ୍ୟ ॥

× × ×

ଶ୍ରୀବିଘ୍ନରାଜଙ୍କୁ ମୁଁ ହୃଦରେ ଲଗ୍ନେ ଭାବ ।
ଶ୍ରୀଚଣ୍ଡୀପୁରାଣ ଯେ ପ୍ରସନ୍ନେ କହିବ" ॥

ଚଣ୍ଡୀପୁରାଣର ଶେଷରେ କବି ସାରଳା ଦାସ ଦେବୀଦୁର୍ଗାଙ୍କର ବିଭିନ୍ନ ରୂପ ତଥା ଅବତାରକୁ ସ୍ତୁତି କରିଛନ୍ତି । କବି ସାରଳା ପ୍ରକୃତରେ ଥିଲେ ଝଙ୍କଡ଼ବାସିନୀ ସାରଳାଙ୍କର ଆରାଧକ । ତେଣୁ ସେ ଚଣ୍ଡୀପୁରାଣର ପର୍ବସମାପ୍ତି ଅଧ୍ୟାୟରେ ସାରଳା (ଦୁର୍ଗା)ଙ୍କର ବିଭିନ୍ନ ଅବତାରକୁ ସ୍ତୁତି କରିବା ନିଜର ପରମ କର୍ତ୍ତବ୍ୟ ବୋଲି ମନେ କରିଛନ୍ତି । ନିର୍ବିଘ୍ନରେ ଗ୍ରନ୍ଥଟିର ପର୍ବସମାପ୍ତି ଲାଗି ସେ ଯେପରି ବିଘ୍ନରାଜଙ୍କୁ ଭକ୍ତିଅର୍ଘ୍ୟ ପ୍ରଦାନ କରିଛନ୍ତି, ଶ୍ରୀସାରଳାଙ୍କ ଭକ୍ତରୂପେ ତାଙ୍କ ପାଦପଦ୍ମରେ ମଧ୍ୟ ଅନୁରୂପ ଅର୍ଘ୍ୟ ଅର୍ପଣ କରିଛନ୍ତି ।

'ବିଲଙ୍କା ରାମାୟଣ'ରେ କବି ସାରଳା ଦାସଙ୍କ ଭକ୍ତିଭାବନା ବହୁମୁଖୀ ହୋଇ ଉଠିଛି । ସେ ପ୍ରଥମେ ଶ୍ରୀରାମ, ତତ୍ପରେ ଶିବାଣୀ ଓ ମାଳକଣ୍ଠ ଏବଂ ସର୍ବଶେଷରେ ଶ୍ରୀଜଗନ୍ନାଥରୂପୀ ଶ୍ରୀହରିଙ୍କୁ ସ୍ତୁତି କରିଥିବାର ମଙ୍ଗଳାଚରଣରୁ ଜଣାଯାଏ—

"ରାମ ଯେ ରାମନାମ ଶ୍ରୀହରିର ନାମ
ଯେଉଁ ନାମ ଭାବିଲେ ନ ଦଣ୍ଡେ କାଳଯମ" ॥

× × ×

ଜୟ ସର୍ବମଙ୍ଗଳା ଗୋ ଶିବର ଘରଣୀ ।
ପ୍ରସୁ କୋଠାର ଧାରଣୀ ମହିଷାସୁର ମର୍ଦ୍ଦିନୀ ॥

× × ×

ଜୟ ଜୟ ସଦାଶିବ ତ୍ରିଶୂଳ ଧାରଣ ।
ବିଭୂତି ବିଲେପନ ପାର୍ବତୀରମଣ ॥
ଜୟ ଜୟ ନୀଳକଣ୍ଠ ଜୟ ଚନ୍ଦ୍ରଧର ।
ତାଣ୍ଡବ ନୃତ୍ୟେ ଦେବ ମୋହିଲୁ ତ୍ରିପୁର ॥

× × ×

ଜୟ ଜୟ ଜଗନ୍ନାଥ ଜଗତ କାରଣ ।
ଅନାଦି ନିରାକାର ଦେବନାରାୟଣ ॥
ସଂସାର ତାରଣ ପ୍ରଭୁ ଯୋଗିଜନ ଭେଳା ।
ଅନାଦି ଭଞ୍ଜନ ନାଥ ଦେବ ଚକାଡୋଳା ॥

× × ×

ଶ୍ରୀହରି ସୁମରି ନରେ ଭବ୍ରୁଂ ହୁଅ ପାର ।
ଶ୍ରୀହରି ସୁମରି ନରେ ସଂସାରୁ ଉଦ୍ଧର ॥
ଶ୍ରୀହରି ନାମ ଗୋଟି କରିତେ ଅଭ୍ୟାସ ।
ଶ୍ରୀହରି ଚରଣେ ଶରଣ ସିଦ୍ଧେଶ୍ବର ଦାସ'' ॥

ଓଡ଼ିଶାରେ 'ପଞ୍ଚଦେବତା' ଉପାସନା ଓ ସେମାନଙ୍କ ମଧ୍ୟରେ କେନ୍ଦ୍ରବିନ୍ଦୁ ଶ୍ରୀଜଗନ୍ନାଥଙ୍କ ପ୍ରତି ଭକ୍ତିଭାବନା ପ୍ରଦର୍ଶନ କରିବାର ଏକ ପରମ୍ପରା ଗଙ୍ଗବଂଶ ରାଜତ୍ୱରୁ ଆରମ୍ଭରୁ ପ୍ରଚଳିତ କରାଯାଇଥିଲା । ଗଙ୍ଗମାନେ ପ୍ରଧାନତଃ ବିଷ୍ଣୁଭକ୍ତ ହୋଇଥିବାରୁ, ଓଡ଼ିଶାରେ ସପ୍ତମ ଶତାବ୍ଦୀ ଠାରୁ ଆରମ୍ଭ କରି ଏକାଦଶ ଶତାବ୍ଦୀର ଶେଷାର୍ଦ୍ଧ ପର୍ଯ୍ୟନ୍ତ ଶାକ୍ତ ମତବାଦ ତଥା ପରବର୍ତ୍ତୀକାଳରେ ଶୈବ ତଥା ଶାକ୍ତମତବାଦର ବିରୋଧୀ ଥିଲେ । କିନ୍ତୁ ଜନସାଧାରଣଙ୍କ ଭକ୍ତିଭାବନାରେ ହଠାତ୍ ଆଘାତ ଦେବା-ଭଳି କୌଣସି ପଦକ୍ଷେପ ସେମାନେ ନେବାକୁ ସୁଦକ୍ଷ ଶାସକ ଭାବରେ ଉଚିତ ମନେ କରି ନ ଥିଲେ । ତେଣୁ ସେମାନେ ଗଣେଶ, ଭାସ୍କର, ବିଷ୍ଣୁ, ଶିବ, ଦୁର୍ଗା ଏହି ପଞ୍ଚଦେବଙ୍କ ସମ୍ମିଳିତ ଉପାସନାରେ ବିଷ୍ଣୁଙ୍କ ପ୍ରାଧାନ୍ୟକୁ ସ୍ୱୀକାର କରି ସମାଜରେ ପ୍ରଚଳନ କରାଇଥିଲେ । ଗଙ୍ଗ–ରାଜାମାନେ ଶ୍ରୀ-ଜଗନ୍ନାଥଙ୍କୁ ଓଡ଼ିଶାର ଧର୍ମଧାରାରେ ପ୍ରଧାନ-ଦେବରୂପେ ପ୍ରତିପାଦିତ

କରାଇବା ପାଇଁ ଶ୍ରୀ ମନ୍ଦିରର ସେବା, ପୂଜା, ନୀତି ପ୍ରଭୃତିରେ ଗୁରୁତ୍ୱ ସ୍ଥାପନ କରିଥିଲେ । ପରିଶେଷରେ ଶ୍ରୀ ଜଗନ୍ନାଥଙ୍କୁ ଓଡ଼ିଶାର 'ରାଷ୍ଟ୍ରଦେବ' ରୂପେ ବିଶାଳ କଳିଙ୍ଗ ସାମ୍ରାଜ୍ୟର ଅଧୀଶ୍ୱର ଭାବରେ ଶର୍ଜିତ କରିଥିଲେ । ତେଣୁ ଉତ୍କଳୀୟ ଜନତାର ଭକ୍ତିପୂର୍ଣ୍ଣ ଦୃଷ୍ଟି 'ପଞ୍ଚଦେବଉପାସନା' ମାଧ୍ୟମରେ ଶ୍ରୀଜଗନ୍ନାଥଙ୍କ ଠାରେ ନିବଦ୍ଧ ହୋଇଥିଲା । ଏହି ପରି-ପ୍ରେକ୍ଷୀରେ କବି ସାରଳା ଦାସ ପଞ୍ଚଦେବଙ୍କୁ ନିଜର ଆରାଧ୍ୟ ବୋଲି ମନେକରି ସ୍ୱରଚିତ ଗ୍ରନ୍ଥମାନଙ୍କରେ ସ୍ତୁତି କରିବା ସଙ୍ଗେ ସଙ୍ଗେ 'ମହାଭାରତ'ରେ ଶ୍ରୀଜଗନ୍ନାଥଙ୍କ ପ୍ରତି ଐକାନ୍ତିକ ଭକ୍ତିଭାବନା ପ୍ରଦର୍ଶନ କରିଛନ୍ତି ।

ସାରଳା ଦାସ ମହାଭାରତର ଆଦ୍ୟପର୍ବରେ ପ୍ରଥମେ ଗଣେଶ, ସାରଳା, ନୀଳକଣ୍ଠ ଶିବ ପ୍ରଭୃତିଙ୍କୁ ସ୍ତୁତି କରି ସେମାନଙ୍କ ଚରିତ କୀର୍ତ୍ତନରେ ଅନେକ ପଦ ରଚନା କରିଛନ୍ତି, କିନ୍ତୁ ମହାଭାରତର ପ୍ରତି-ସ୍ତରରେ ସେ ଉତ୍କଳୀୟ ଜନତାର ପ୍ରତିନିଧି ଭାବେ ଶ୍ରୀଜଗନ୍ନାଥଙ୍କୁ ଆରାଧ୍ୟ ଦେବ ରୂପେ ଭକ୍ତି କରି ଭକ୍ତମନର ଆକୁଳ ନିବେଦନ ଜଣାଇଛନ୍ତି ।

"ଶ୍ରୀପମେଶ୍ୱର ମହାକାଳଙ୍କ ମଉଦଧିର ଉତ୍ତର ତଟେ ।
ନୀଳ ସୁନ୍ଦର ପର୍ବତ ନୀଳ କଳ୍ପବଟେ ॥
ବିଜୟେ ରାମକୃଷ୍ଣ ସୁଭଦ୍ରା ନାମେ ବ୍ରହ୍ମା ।
ବୃଦେଶତ ବର୍ଷଣ ସହସ୍ର ବରଷକୁ ଯୋଗଲୟେ ମହାତମା ॥
କଳିକାଳ ଧ୍ୱଂସିଣ ଭୋଗେଣ କୋଟି ପୂଜା
ପ୍ରଳମ୍ବିତେ ଖଟଇ ଶ୍ରୀ କପିଳେଶ୍ୱର ରାଜା" ॥

× × ×

ନୀଳେନ୍ଦିଦଳ ଉତ୍ପଳ ଯାହାର ବଦନ ମଣ୍ଡଳ ।
ଶ୍ରୀବକ୍ଷ ବିରାଜିତ ହୃଦେ ଶଙ୍ଖଶାର୍ଦ୍ଧୋଳ ॥
ଦ୍ୱିବାଙ୍ଗ ପୂରୁଷ ଦେବ ଶମୂଳ ଜନ ଚିନ୍ତା ।
ତେଣୁ କରି ଜନାର୍ଦ୍ଦନ ନାମ ବହନ୍ତି ସୃଷ୍ଟି କରତା ॥
ଯାବତ ଚନ୍ଦ୍ର ଦିବାକର ଥିବ ।
ଶ୍ରୀ ଜଗନ୍ନାଥ ନାମ ଗୋଟି ହୃଦପୁରେ କରି ଠାବ" ॥

× × ×

ବନ୍ଦଇ ନାରାୟଣ ନୀଳଗିରି ନାଥ ।
ଚତୁର୍ଦ୍ଧାରୂପ ଧରି ବିଜୟେ ପଦ୍ମନେତ୍ର ॥
ପ୍ରେକଇ ମୂର୍ତ୍ତି ଯେ ଚତୁର୍ଦ୍ଧାରୂପ ହୋଇ ।
ଜଗନ୍ନାଥ, ବଳଭଦ୍ର, ସୋହୋଦ୍ରା, ସୁଦର୍ଶନ ନାମବନ୍ତ" ।
(ସାରଳା ମହାଭାରତ—ଆଦ୍ୟପର୍ବ)

ଓଡ଼ିଆ ସାହିତ୍ୟର ବ୍ୟାସ କବି ସାରଳା ଦାସ ବିଭିନ୍ନ ଦେବ-ଦେବୀଙ୍କୁ ସ୍ତୁତି କରିଥିଲେ ହେଁ ତାଙ୍କ ଭକ୍ତିଭାବନାରେ ଶ୍ରୀଜଗନ୍ନାଥ ମହାପ୍ରଭୁ ଶ୍ରେଷ୍ଠ ସ୍ଥାନ ଅଧିକାର କରନ୍ତି । ସାରଳା ଦାସଙ୍କ ଠାରୁ ଏହି ପରମ୍ପରା ସୃଷ୍ଟି ହୋଇଛି ବୋଲି କହିଲେ ଅସମୀଚୀନ ହେବ ନାହିଁ । ଯଦିଓ ଗଙ୍ଗରାଜାମାନେ ଶ୍ରୀଜଗନ୍ନାଥଙ୍କୁ ପରମାରାଧ୍ୟ ରୂପେ ପ୍ରତିଷ୍ଠିତ କରାଇ, ତାଙ୍କୁ କଳିଙ୍ଗ-ସାମ୍ରାଜ୍ୟର ଅଧୀଶ୍ୱରରୂପେ ଜନ-ସମାଜରେ ପ୍ରଚଳିତ କରାଇଥିଲେ, ତଥାପି ସାହିତ୍ୟ କ୍ଷେତ୍ରରେ ମହାପ୍ରଭୁଙ୍କୁ ସର୍ବୋତ୍ତମ ମହତ୍ତ୍ୱ ସାରଳା ଦାସ ପ୍ରଦାନ କରିଥିଲେ । ସାରଳା ଦାସ ଶ୍ରୀକୃଷ୍ଣ ଓ ଶ୍ରୀନୀଳାଚଳବାସୀ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ମଧ୍ୟରେ ଅଭେଦ କଳ୍ପନା କରିବା ସଙ୍ଗେ ସଙ୍ଗେ ତାଙ୍କୁ ପରଂବ୍ରହ୍ମ ରୂପେ ସ୍ୱରଚିତ ପୁସ୍ତକ ମହାଭାରତରେ ଉଲ୍ଲେଖ କରିଛନ୍ତି । ଏହି ପରମ୍ପରା ଅଦ୍ୟାପି ଉତ୍କଳର ଜନସମାଜକୁ ପ୍ରଭାବିତ କରି ଆସୁଛି ।

ସାରଳାଙ୍କ ପରବର୍ତ୍ତୀ ଯୁଗର କାବ୍ୟକାର ଅର୍ଜ୍ଜୁନ ଦାସ ସ୍ୱରଚିତ 'ରାମବିଭା' ଓ 'କଳ୍ପଲତା' କାବ୍ୟରେ ଶ୍ରୀବଡ଼ଠାକୁରଙ୍କ ପ୍ରତି ଅଗାଧ-ଭକ୍ତିର ପରିଚୟ ଦେଇଛନ୍ତି । ସେ ଶ୍ରୀରାମଙ୍କ ବିବାହ ପ୍ରସଙ୍ଗରେ ଯତ୍ରତତ୍ର ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ବେଶ, ଧୂପ, ଆଦିର ବର୍ଣ୍ଣନା କରି, ନିଜର ଅଚଳା-ଭକ୍ତି-ଭାବନାରେ ତାତ୍କାଳିକ ବର୍ତ୍ତମାନ ଅବସ୍ଥାରେ ରହି, ଜଣେ ଆଦର୍ଶ ଭକ୍ତ ରୂପେ ପରିଚିତ ହୋଇଛନ୍ତି ।

'ଜଗମୋହନ ରାମାୟଣ'ର ରଚୟିତା ବଳରାମ ଦାସ 'ଆର୍ଷ-ରାମାୟଣ'ର ଅବଲମ୍ବନରେ ସ୍ୱଗ୍ରନ୍ଥ ରଚନା କରିଥିଲେ ହେଁ, ସେ ପ୍ରତ୍ୟେକ ସ୍ଥଳରେ ଶ୍ରୀଜଗନ୍ନାଥଙ୍କୁ ପରଂବ୍ରହ୍ମ ରୂପେ ବର୍ଣ୍ଣନା କରି ନିଜ ଭକ୍ତିଭାବନାର ସମ୍ୟକ ପରିଚୟ ଦେଇଛନ୍ତି । କବି ବଳରାମ ଦାସଙ୍କ

ଭକ୍ତିଭାବନାରେ ଶ୍ରୀ ଜଗନ୍ନାଥ ଅନନ୍ତ, ଅବ୍ୟକ୍ତ, ଅରୂପ ଏବଂ ଦଶାବତାର-ଠାରୁ ଅଭିନ୍ନ ଅବତାରୀରୂପେ ପରିକଳ୍ପିତ ହୋଇଛନ୍ତି । ଶ୍ରୀରାମ ପ୍ରଥମ ଅବତାର ରୂପେ ମର୍ତ୍ତ୍ୟରେ ଅବତୀର୍ଣ୍ଣ ହୋଇ ପରଂବ୍ରହ୍ମଙ୍କର ଲୀଳା ପ୍ରକଟ କରିଛନ୍ତି । ତେଣୁ ସେ 'ଜଗମୋହନ ରାମାୟଣ'ର ମଙ୍ଗଳା ଚରଣରେ ଭକ୍ତ ଗଦ୍‌ଗଦ୍ କଣ୍ଠରେ ଗାନ କରିଛନ୍ତି—

"ବନ୍ଦଇଂ ଜଗନ୍ନାଥ କମଳା ଦେବୀ ପତି ।
ନୀଳଗିରି ବାସୀ ଯେ ଅପୂର୍ବ ମୂରତି ॥

× × ×

ଦେଖିବାକୁ ସୁଲଭ ଯେ ନୟନେ ଅଗୋଚର ।
ପରଂବ୍ରହ୍ମ ରୂପ ଯେ ଦିଶଇ ଶୋଭାକର ॥
ଅବ୍ୟକ୍ତ ଅରୂପ ଯେ ବିବେକ ବିବ୍ୟକାୟା ।
ଅବତୀର୍ଣ୍ଣରୂପେ ଜାତ ଅବିବେକ ମାୟା ॥
ଅନନ୍ତ କୋଟି ବ୍ରହ୍ମାଣ୍ଡ ଯେ ଏକଇ ଈଶ୍ୱର ।
ସ୍ୱଚ୍ଛନ୍ଦେ ବିଜୟ ଯେ ଦକ୍ଷିଣ ସିନ୍ଧୁତୀର" ॥

ସାରଳା ଦାସ, ଅର୍ଜ୍ଜୁନ ଦାସ ଓ ବଳରାମ ଦାସଙ୍କ ପରମ୍ପରା ପରବର୍ତ୍ତୀ ଓଡ଼ିଆ ସାହିତ୍ୟରେ ପ୍ରକଟିତ ହୋଇଛି । କବି ନରସିଂହ ସେଣ, ଦୀନକୃଷ୍ଣ ଦାସ, ଉପେନ୍ଦ୍ର ଭଞ୍ଜ ପ୍ରଭୃତି ବହୁ କବି ସ୍ୱସ୍ୱ କାବ୍ୟର ଆରମ୍ଭରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ସ୍ତୁତି କରି ଗ୍ରନ୍ଥମାନ ପ୍ରଣୟନ କରିଛନ୍ତି । ଓଡ଼ିଶାର ଭକ୍ତିଭାବନାରେ ଶ୍ରୀଜଗନ୍ନାଥ ଶ୍ରେଷ୍ଠତ୍ୱ ସ୍ଥାନ ଅଧିକାର କରିଛନ୍ତି, ତେଣୁ ଓଡ଼ିଆ ସାହିତ୍ୟର ଭକ୍ତିଧାରାରେ ଶ୍ରୀଜଗନ୍ନାଥ ମହାପ୍ରଭୁ ରାମ, କୃଷ୍ଣ, ନୃସିଂହ ଆଦି ଅବତାରର ସ୍ରଷ୍ଟାରୂପେ ପ୍ରତିଫଳିତ ହୋଇଛନ୍ତି ।

ସର୍ବଭାରତୀୟ ପରିପ୍ରେକ୍ଷୀରେ ଶ୍ରୀରାମ ଶ୍ରୀକୃଷ୍ଣ ଯେପରି ସାହିତ୍ୟ-କ୍ଷେତ୍ରରେ ପ୍ରାଧାନ୍ୟ ବିସ୍ତାର କରିଛନ୍ତି, ଓଡ଼ିଆ ସାହିତ୍ୟରେ ଶ୍ରୀଜଗନ୍ନାଥ ଅନୁରୂପ ଆସନ ଅଧିକାର କରିଛନ୍ତି । ଅବଶ୍ୟ ରାମ ଓ କୃଷ୍ଣଙ୍କ ଲୀଳା ଉପରେ ଓଡ଼ିଆ କାବ୍ୟ ଜଗତରେ ଶତାଧିକ ପୁସ୍ତକ, ସହସ୍ର ସହସ୍ର ଭଜନ ରହିଛି ; କିନ୍ତୁ ସେହି ତୁଳନାରେ ଶ୍ରୀଜଗନ୍ନାଥଙ୍କ ବର୍ଣ୍ଣନା ବହୁ ଗୁଣରେ

ଅଧିକ । ନିର୍ଗୁଣପନ୍ଥୀ ନାନକ, ନାମଦେବ, କବୀର ପ୍ରଭୃତି ଭକ୍ତକବି-ମାନେ ବ୍ରହ୍ମଙ୍କ ନିରାକାର ସ୍ୱରୂପକୁ ଧ୍ୟାନ କରି 'ପଦ୍ୟ' ମାନ ରଚନା କରିଛନ୍ତି । କିନ୍ତୁ ଓଡ଼ିଆ କବିମାନେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ସାକାର ସ୍ୱରୂପରେ ନିର୍ଗୁଣ, ନିରାକାରତ୍ୱର ଆଭାସ ସ୍ପଷ୍ଟ ପ୍ରତ୍ୟକ୍ଷ କରିଛନ୍ତି । ତେଣୁ ଓଡ଼ିଆ କବି ଭକ୍ତିପୂତ କଣ୍ଠରେ ଗାନ କରିଛନ୍ତି—

"ଜୟ ଜୟ ଜଗବନ୍ଧୁ ଜଗତ ଜୀବନ ।
ଜୟ ଜୟ ଅନାଦି ଅନନ୍ତ ନିରଞ୍ଜନ ହେ ॥

କମ୍ପା

ଯଉନେ ଜଗତ ବନ୍ଧୁ ନାମ ଜପ ତୁ ମନୁଆରେ ।
ଶୁକ ସନକ ଯୋଗି ଜନକ ଯା' ଚରଣ ସେବାରେ ॥
ଅଶରଣଜନ ପୂର୍ଣ୍ଣକାମ ନିଗମକଳ୍ପ ପୂର୍ଣ୍ଣଧାମ ।
ଆରତ ହରଣେ ଆରତତ୍ରାଣ ନଥିବେଟି କେହି ସାହାରେ" ॥

ଓଡ଼ିଆ କବିଙ୍କ ଭକ୍ତିଭାବନାରେ ଶ୍ରୀଜଗନ୍ନାଥ ମହାପ୍ରଭୁ ଅନାଦି, ଅଚ୍ୟୁତ, ଅନନ୍ତ, ଅବ୍ୟକ୍ତରୂପ ବ୍ୟକ୍ତ ହେବା ସଙ୍ଗେ ସଙ୍ଗେ, ବଳିଦ୍ୱାରେ ବାମନ, ଗୋପପୁରେ ଯମଳାର୍ଜୁନଭଞ୍ଜନକାରୀ, ଗହନ ବନରେ ରଥାଙ୍ଗ-ପାଣି, କୁରୁପତିସଭାରେ ଦ୍ରୌପଦୀର ଲଜ୍ଜାନିବାରଣକାରୀ, ପିତୃ ସତ୍ୟପାଳକ ନୃପଧାରୀ, ଭକ୍ତଙ୍କମାନଉଦ୍ଧାରକ ନୃସିଂହ ରୂପେ ଗୀତ ହୋଇଛନ୍ତି । ହେଲେଥି ପାଇଁ ଯବନ କବି ସାଲବେଗ ଭକ୍ତିପୂର୍ଣ୍ଣ ଅର୍ଘ୍ୟ ଶ୍ରୀଜଗନ୍ନାଥଙ୍କ ଶ୍ରୀପୟରେ ଢାଳି ଗାଇଛନ୍ତି—

"ମୋତେ ସେହିରୂପ ଦେଖାଅ ହରି ।
ଜୟ ଶ୍ରୀରାଧେ ବୋଲି ଡାକେ କାଶରୀ ॥
ଯେଉଁ ରୂପେ ବଳିଦ୍ୱାରେ ହେଲ ଭିକାରୀ ।
ନିତାଦୀରେ ଦାନ ନେଇ ବଳୀକି ପାତାଳେ ଥୋଇ,
ତେଣୁକରି ଶୁଦ୍ଧମନ୍ତ୍ରୀ ନୟନରେ କୁଶଭରି ॥

କୈକେୟୀ ହେଲେ ଭଗାରି ରାମ ହେଲେ ବନବାସୀ,
ସଙ୍ଗତେ ସୀତାସ୍ବାମୀ ଲକ୍ଷ୍ମଣ ଯା ସେବାକାରୀ ॥
ଗୋପେ ଜନମ ହୋଇଲ ବନେ ଧେନୁ ଚରାଇଲ,
ଗୋପାଳପୁଅଙ୍କ ମେଳେ ନାଚୁଥାଅ ତଳ ତଳ ॥
ଡାହାଣେ ଶ୍ରୀହଳପାଣି ମଧ୍ୟେ ସୁଭଦ୍ରା ଭଉଣୀ।
ବାମପାଶେ ବସିଅଛ ଶଙ୍ଖ-ଚକ୍ର-ଗଦାଧାରୀ ॥
କହେ ସାଲବେଗ ହୀନ ଜାତିରେ ଅଟେ ଯବନ,
କଂସ ଅଷ୍ଟମଲ୍ଲ ମାରି କାହାକୁ ନ ଅଛ ତାରି" ॥



# ଓଡ଼ିଆ ସାହିତ୍ୟରେ କବି ବନମାଳୀ

ଓଡ଼ିଆ ସାହିତ୍ୟର ଇତିହାସରେ କୃଷ୍ଣଦାସ ବା ସାନକୃଷ୍ଣ ଦାସ ଗୋଟିଏ ସମସ୍ୟା ହୋଇ ରହି ଆସିଛନ୍ତି । ଓଡ଼ିଆ ସମାଲୋଚନା ସାହିତ୍ୟର କୁଳଗୁରୁ ସ୍ୱର୍ଗତଃ ଆର୍ତ୍ତବଲ୍ଲଭ, ଡକ୍ଟର କରୁଣାକର, ପଣ୍ଡିତ ବିନାୟକ ମିଶ୍ର କୃଷ୍ଣଦାସ ବା ସାନକୃଷ୍ଣଦାସଙ୍କୁ ନେଇ—'ଏକ' ବା 'ଦୁଇ' ବିବାଦରେ ବହୁ ଝଡ଼ ସୃଷ୍ଟି କରିଥିଲେ । କିନ୍ତୁ ପ୍ରକୃତିରେ ଆଜି ଆଲୋଚନା କ୍ଷେତ୍ରରେ ରସକଲ୍ଲୋଳର ପ୍ରଣେତା କୃଷ୍ଣଦାସ, ରସବିନୋଦ ଆଦି ବହୁ ପୁସ୍ତକର ରଚୟିତା ସାନକୃଷ୍ଣଦାସ, ସଂଗୀତ କଳ୍ପଲତାର ଲେଖକ କୃଷ୍ଣଦାସ, ବଡ଼ ଜେନା ମହାପାତ୍ର, ମଧୁସୂଦନ ପୁତ୍ର କୃଷ୍ଣଦାସ, ନରସିଂହ ପୁତ୍ର କୃଷ୍ଣଦାସ, ଜଡ଼ାକୃଷ୍ଣ ଦାସ, ଅନନ୍ତ ଦାସଙ୍କ ଶିଷ୍ୟ କୃଷ୍ଣଦାସ, ଜଗନ୍ନାଥଦାସଙ୍କ ଶିଷ୍ୟ କେଳିକୃଷ୍ଣ ଦାସ ଓ ବୈଦିଂଶାସ୍ତ୍ରବୋଲିର ପ୍ରଣେତା କବିରାଜ କୃଷ୍ଣଦାସ (ଗୋସ୍ୱାମୀ କୃଷ୍ଣଦାସ ନୁହନ୍ତି) ପ୍ରଭୃତି ନଅ-ଜଣ ସାନକୃଷ୍ଣ ଓଡ଼ିଆ ସାହିତ୍ୟ ଜଗତରେ ଦେଖାଯାନ୍ତି ।

ସେହିପରି 'କବି ବନମାଳୀ' ମଧ୍ୟ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ସମସ୍ୟା ସୃଷ୍ଟି କରିଛନ୍ତି । ବର୍ତ୍ତମାନ ଆମ ଆଲୋଚନାର ପରିସର ମଧ୍ୟକୁ ପାଞ୍ଚଜଣ ବନମାଳୀ ଆସନ୍ତି—(୧) ବନମାଳୀ ରାସ ପ୍ରଣେତା ବନମାଳୀ, (୨) ପଦ୍ୟାବଳୀ ପ୍ରଣେତା ବନମାଳୀ, (୩) ସୁଚିତ୍ର ରାମାୟଣ ପ୍ରଣେତା ବନମାଳୀ, (୪) ବାର୍ଷିକ ରାସ (ବଙ୍ଗଳା ମିଶା ଓଡ଼ିଆ ଭାଷାରେ) ପ୍ରଣେତା ବନମାଳୀ ସାମନ୍ତରାୟ, ଏବଂ (୫) ରାଧିକାବୋଲି ଓ ଉଦ୍ଧବ ଚଉତିଶାର ରଚୟିତା ଦ୍ୱିଜ ବନମାଳୀ ।

ପ୍ରସ୍ତୁତ ପୁସ୍ତକରେ ପଦ୍ୟାବଳୀ ପ୍ରଣେତା ତଥା ଖୁର୍ଦ୍ଧା ରାଜା ବୀରକେଶରୀଦେବଙ୍କ ସମସାମୟିକ ବନମାଳୀ ପଟ୍ଟନାୟକଙ୍କ (ଦାସ) ଆଲୋଚନା କରା ଯାଉଥିବାରୁ, ଏଠାରେ ଅନ୍ୟ ଚାରିଜଣ ବନମାଳୀଙ୍କ ସମ୍ବନ୍ଧରେ ସଂକ୍ଷେପରେ ସୂଚନା ଦିଆଗଲା ।

## ଗୀତ ପ୍ରଣେତା ବନମାଳୀ:—

'ଖୁରୁଧା ଇତିହାସ' ଶୀର୍ଷକ ପୁସ୍ତକରେ ଖୁରୁଧା ରାଜବଂଶର ରାଜାମାନଙ୍କ ଦରବାରରେ ପ୍ରତିଷ୍ଠିତ କବିମାନଙ୍କ ତାଲିକା ଦେଇ ଐତିହାସିକ ଶ୍ରୀଯୁକ୍ତ କେଦାର ନାଥ ମହାପାତ୍ର 'ଗୀତ' ପ୍ରଣେତା ବନମାଳୀଙ୍କ ସମ୍ବନ୍ଧରେ ଲେଖିଛନ୍ତି—

"ଓଡ଼ିଆ ସାହିତ୍ୟର ଇତିହାସରେ ଏକାଧିକ ବନମାଳୀଦାସ ପ୍ରସିଦ୍ଧି ଲାଭ କରିଥିଲେ । ସେଥି ମଧ୍ୟରୁ 'ଗୃହ ଇଚ୍ଛାବତୀ' ପ୍ରଣେତା ବନମାଳୀ ଦାସ ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗରେ ଆବିର୍ଭୂତ ହୋଇଥିଲେ" ।
(ଖୁରୁଧା ଇତିହାସ—ପୃ—୨୩୯)

ଅାଲୋଚକ ଶ୍ରୀଯୁକ୍ତ ମହାପାତ୍ର'ଗୃହ ଇଚ୍ଛାବତୀ' କାବ୍ୟ ସମ୍ପାଦନା କରି ତା'ର ମୁଖବନ୍ଧରେ ଶିଶୁ ବନମାଳୀଙ୍କ ସମ୍ବନ୍ଧରେ ଆଲୋଚନା କରିବାକୁ ଯାଇ ଲେଖିଛନ୍ତି—

"ସୁଲଳିତ ପଦ୍ୟାବଳୀ ପ୍ରଣେତା ଭକ୍ତକବି ବନମାଳୀ ଦାସ ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରେ ଖୁରୁଧାରାଜା ବୀରକେଶରୀ ଦେବଙ୍କ ରାଜତ୍ୱ କାଳରେ ଆବିର୍ଭୂତ ହୋଇଥିବା ତାଙ୍କର କେତେକ ପଦ୍ୟପାଠରୁ ଜଣାଯାଏ । କିନ୍ତୁ ଗୃହ ଇଚ୍ଛାବତୀ କାବ୍ୟ ପ୍ରଣେତା ବନମାଳୀ ଦାସ ପଦ୍ୟାବଳୀ ରଚୟିତା ବନମାଳୀଙ୍କ ଠାରୁ ଭିନ୍ନ ଓ ପ୍ରାଚୀନ-ତର । × × × ତେଣୁ ସେ ଷୋଡ଼ଶ ଶତାବ୍ଦୀର ଶେଷ ଭାଗରେ ଆବିର୍ଭୂତ ହୋଇଥିବାର ସ୍ଥିର କରାଯାଇ ପାରେ" ।
(ଗୃହଇଚ୍ଛାବତୀମୁଖବନ୍ଧ ପୃ—୨—୩)

ଗୀତ ପ୍ରଣେତା ଶିଶୁ ବନମାଳୀ ଦାସଙ୍କ 'ବନମାଳୀ ଗୀତ' ଶୀର୍ଷକ ଖଣ୍ଡିଏ ପୋଥି ଶ୍ରୀଯୁକ୍ତ କେଦାର ନାଥ ମହାପାତ୍ର (କଳାହାଣ୍ଡି ଜିଲ୍ଲାର ଛିଲିପା ଗାଁରେ ମଦନ ମୋହନ ଠାକୁରଙ୍କ ଲିଖିତ) କଳାହାଣ୍ଡିର ପ୍ରତ୍ନତତ୍ତ୍ୱ ପାଠାଗାର ପାଇଁ ସଂଗ୍ରହ କରିଥିଲେ । କିନ୍ତୁ ପୋଥିଟି ଅସମ୍ପୂର୍ଣ୍ଣ ।

ପରବର୍ତ୍ତୀ କାଳରେ 'ଗୃହଚିନ୍ତାମଣି' ଶୀର୍ଷକ ଖଣ୍ଡିଏ କାଳ୍ପନିକ କାବ୍ୟ ରାଜ୍ୟ ସଂଗ୍ରହାଳୟ ପକ୍ଷରୁ ସଂଗୃହୀତ ହୋଇଥିଲା । ଉକ୍ତ ପୁସ୍ତକର ସମ୍ପାଦନା କରି ଶ୍ରୀଯୁକ୍ତ ମହାପାତ୍ରେ, ତାହା 'ରାସ' ପ୍ରଣେତା ବନମାଳୀଙ୍କ ରଚନା ବୋଲି ମତଦେଇ, କବିଙ୍କ ସମୟ ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର ଶେଷାର୍ଦ୍ଧ ବୋଲି ସ୍ଥିର କରିଛନ୍ତି ।

ବୌଦ୍ଧ ରାଜପରିବାରରୁ 'ବନମାଳୀ ରାସ' ଶୀର୍ଷକ ଖଣ୍ଡିଏ ସମ୍ପୂର୍ଣ୍ଣ ପୋଥି ସଂଗୃହୀତ ହୋଇ ରାଜ୍ୟ ସଂଗ୍ରହାଳୟର ପୋଥି-ଭଣ୍ଡାରରେ ସଂରକ୍ଷିତ ହୋଇଛି । ଉକ୍ତ ପୋଥିର ପାଠରୁ ଜଣାଯାଏ ଯେ, କବି ବନମାଳୀ ଭଣପୁର ରାଜ୍ୟର ବଡ଼ଦେଶ ଅନ୍ତର୍ଗତ 'ମହିଖଣ୍ଡ' ଗ୍ରାମରେ 'ଗୋପାଳ' କୁଳରେ ଜନ୍ମଗ୍ରହଣ କରିଥିଲେ, ତାଙ୍କ ପିତାଙ୍କ ନାମ ଥିଲା— ମୋହନ ଜେନା । ସେ ପିଲାଟି ଦିନରୁ 'ସାଧୁସଙ୍ଗ' କରି, ସେମାନଙ୍କ କୃପାରୁ ଶ୍ରୀକୃଷ୍ଣଙ୍କ 'ରାସ' ରଚନା କରିଥିଲେ ।

"ବନ୍ଦିଲି ରାହାସ ଯେ ଗୋପରେ ଉପଲୀଳା ।
ସୁର ଅଇରି ନବାରି ଦେବକୀ ଦେବୀ ବଳା ॥

× × ×

ଅଖିଳ ମଙ୍ଗଳ ତ୍ରୈଲୋକ୍ୟ ନାରାୟଣ ।
ବନମାଳୀ ଦାସ ମୁଁ ଶରଣ ଜନ୍ମେଜନ୍ମ ॥
ବାଳୁତ-ମନ୍ତ ଧୃବୁଦ୍ଧି ଅଜ୍ଞ ଜଡ଼ଦେହୀ ।
ବର୍ଣ୍ଣେଣ ଗୋପାଳ ମୁଁ ସୁଜନ ସଙ୍ଗ ନାହିଁ ॥
ପିତା ମୋହନ ଜେନା ପରେଶ ଉପକାର ।
ତାଙ୍କ ଧର୍ମରୁ ସେ ନିର୍ମଳ ମୋ ଶରୀର" ॥

(ବନମାଳୀ ରାସ—ରାଜ୍ୟ ସଂଗ୍ରହାଳୟ ପୋଥି—ପତ୍ର ୪୦୯)

କବି ବନମାଳୀ ଦାସ 'ରାସ'ର ଶେଷ ଅଧ୍ୟାୟରେ ନିଜ ସମ୍ବନ୍ଧରେ ବହୁ ତଥ୍ୟ ଯୋଗାଇଛନ୍ତି । ସେଥିରୁ ଜଣାଯାଏ ଯେ କବି 'କଲ୍ୟାଣ' ଦେଶ

ଅର୍ଥାତ୍ ରଙ୍ଗପୁର ରାଜ୍ୟରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ଘର ରଙ୍ଗପୁରର 'ବଡ଼ ଦେଶ' ଅନ୍ତର୍ଗତ ମଞ୍ଜିଖଣ୍ଡ ଗ୍ରାମରେ ଥିଲା । ତାଙ୍କର ପୃଷ୍ଠପୋଷକ ଥିଲେ—ରଙ୍ଗପୁରର ରାଜା ପଦ୍ମନାଭ ନରେନ୍ଦ୍ରଙ୍କ ଅନୁଜ ପୁରୁଷୋତ୍ତମ ମଙ୍ଗରାଜ । ସେହି ପୁରୁଷୋତ୍ତମ ମଙ୍ଗରାଜଙ୍କ ପୃଷ୍ଠପୋଷକତାରେ ଉକ୍ତ 'ରାସ' ପୁସ୍ତକଟି ରଚନା କରିଥିଲେ ।

"କହିବାକୁ ଦେଶେ ଜାତି କୁତ୍ସିତ ମୋର ମତି ।
ପ୍ରାପତ ନାହିଁ ମୋତେ ସୁଜନ ସଙ୍ଗତି ॥

× × ×

ମୁହିଁ ସେ ଅନାସ୍ଥ ମୋର ସ୍ଥାନ ସ୍ଥିତି ନାହିଁ ।
ଥକାଘର ଖଣ୍ଡିଏ ବଣିଜାର ଭୂଇଁ ॥
ରଙ୍ଗପୁର ରାଜ୍ୟରେ **ବଡ଼ଦେଶେ** ଘର ।
**ମଞ୍ଜିଖଣ୍ଡ** ଗ୍ରାମରେ ରହଣି ମୋହର ॥
ପଦ୍ମନାଭ ନରେନ୍ଦ୍ର ଭୂମିରେ ଅଧିପତି ।
ମହତ୍ତ୍ୱ ମର୍ଯ୍ୟାଦା ବିବେକ ଜନ ପ୍ରୀତି ॥
ସାନୁଜ ମଙ୍ଗରାଜ ପୁରୁଷୋତ୍ତମ ନାମ ।
ସଜ୍ଜନେ ପ୍ରୀତି ସେହୁ ବିବେକ ଉତ୍ତମ ॥
ଅତି ଭାଗ୍ୟବନ୍ତ ଦୁଃଖୀଜନେ ଦୟା ।
ମୋହଠାରେ ଅନୁଗ୍ରହ ବହୁତ ସୁଦୟା ॥
ମେଲାଣି ମାଗିଲେ ସେ ନ ଦିଅନ୍ତି ମୋତେ ଯାଇ ।
ମୁହିଁ ଆଶ୍ରେ କଲି ପାଇଲି ସୁଖରୁହି ॥
ରହିଲି ଭୁଜଚ୍ଛଳେ ନାହିଁ ଅଇର ଭୟେ ।
ମୋତେ ଦୁଇ-ଭାଇ ହରି ଅର୍ଜୁନ ପ୍ରାୟେ ॥

× × ×

ଜନ୍ମଜନ୍ମାନ୍ତରେ ମୋର ଏ କଥା ଅଭିଳାଷ ।
ଶ୍ରୀଜଗନ୍ନାଥ ଶରଣେ ମୁଁ ବନମାଳୀ ଦାସ ॥

ବନମାଳୀ ଦାସ ମୁଁ ସୁକାର୍ତ୍ତି ମନେ ଆସି ।
ନର୍ମଳ କଲ ଆଖି ନର୍ମଳଜଳେ ପଶି" ॥
(ବନମାଳୀ ଦାସ, ରାଜ୍ୟ ସଂଗ୍ରହାଳୟ ପୋଥି—ପତ୍ର ୪୧୦)

## ବନମାଳୀ ସାମନ୍ତ ରାୟ :—

ପୁରୀଜିଲ୍ଲା ଅନ୍ତର୍ଗତ ଚଣ୍ଡେଶ୍ୱର ଗ୍ରାମ ନିବାସୀ ବନମାଳୀ ସାମନ୍ତ-ରାୟ 'ବନମାଳୀ' ନାମ ଧାରୀ ଅନ୍ୟତମ କବିରୂପେ ପରିଚିତ । ଅବଶ୍ୟ ଓଡ଼ିଆ ସାହିତ୍ୟର ଆଲୋଚନା କ୍ଷେତ୍ରରେ ବନମାଳୀ ସାମନ୍ତରାୟ ଆଦୌ ସୁପରିଚିତ ନୁହନ୍ତି । କବି ବନମାଳୀ ସାମନ୍ତରାୟ ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ଶେଷଭାଗର କବି ବୋଲି ତାଙ୍କ ରଚନା ଶୈଳୀ ତଥା ପଦ-ଯୋଜନାରୁ ଅନୁମାନ କରାଯାଏ ।

ପ୍ରଥମତଃ ବନମାଳୀ ସାମନ୍ତରାୟ ଶ୍ରୀଚୈତନ୍ୟଙ୍କ ଅନ୍ୟତମ ଶିଷ୍ୟ, ପ୍ରଖ୍ୟାତ ସଂସ୍କୃତ ବିଦ୍ୱାନ୍ ତଥା 'ବିଦଗ୍ଧମାଧବ ନାଟକ' ଆଦି ବହୁ ସଂସ୍କୃତ କାବ୍ୟ, ଖଣ୍ଡକାବ୍ୟ, ନାଟକର ପ୍ରଣେତା ରୂପ ଗୋସ୍ୱାମୀଙ୍କର ଖଣ୍ଡିଏ ପୁସ୍ତକର ଅବଲମ୍ବନରେ 'ବର୍ଷାକାଳୀନ ରାସ' ଶୀର୍ଷକ ପୁସ୍ତକ ରଚନା କରିଛନ୍ତି । 'ବର୍ଷାକାଳୀନ ରାସ' ପୁସ୍ତକରୁ ଜଣାଯାଏ ଯେ, ରୂପ ଗୋସ୍ୱାମୀଙ୍କ 'ବିଦଗ୍ଧମାଧବ ନାଟକ'ର ସପ୍ତମ ଅଙ୍କରେ ବର୍ଣ୍ଣିତ ବର୍ଷା-ବିରହିଣୀ ଗୋପୀ, ବିଶେଷତଃ ଶ୍ରୀରାଧାଙ୍କ ସହିତ ମିଳିତ ହୋଇ ଶ୍ରୀକୃଷ୍ଣ ଯେଉଁ ରାସଲୀଳା କରିଥିଲେ, କବି ବନମାଳୀ ସାମନ୍ତରାୟ ତା'ର ଅନୁବାଦ 'ପ୍ରାକୃତ' ଭାଷାରେ କରିଛନ୍ତି ।

"ଆମା ମନରେ ବ୍ୟାକୁଳ ହୋଇଲା ସେ କାଳେ ।
ବିଦଗ୍ଧମାଧବ ଗ୍ରନ୍ଥେ ବର୍ଷାରାସ ବୋଲେ ହେ ॥
ସେ ଗ୍ରନ୍ଥ ଦେଖିଣ ଆମି ପ୍ରାକୃତ ବାଣୀରେ ।
ପ୍ରକାଶିଲି ସ୍ୱଳ୍ପବାକ୍ୟେ ଶ୍ରୀକୃଷ୍ଣପ୍ରୀତିରେ ହେ ॥
ଶ୍ରୀରୂପ ଗୋସ୍ୱାମୀ ବାକ୍ୟ ଭାବ ଅନୁସାରେ ।
କହିଲି ପ୍ରାକୃତ ବନ୍ଧେ ପ୍ରଭୁଙ୍କ କୃପାରେ ହେ ॥

ନ୍ୟୁନ ଅତର୍କେ ଅବା ଥିବ କାହିଁ କାହିଁ
ସାଧୁଜନେ ଜଣାଉଛୁ ଦୋଷ ମୋର ନାହିଁ ହେ ॥
ଖଳଜନେ ଏହା ଶୁଣି ହୋଇବେ ବିମୁଖ ।
ସାଧୁଜନ କର୍ଣ୍ଣପୁଟେ ହେବ ମହାସୁଖ ହେ ॥
ଉତ୍କଳପୁରେ ନନ୍ଦିତ ହୋଇଲେ ରସାଳ ।
ଦେବ ନରେ ପ୍ରଶଂସିତ ଅଟେ ତାର ଫଳ ହେ" ॥
(ବର୍ଷାକାଳୀନ ରାସ—ରାଜ୍ୟସଂଗ୍ରହାଳୟ ପୋଥି ଓ. ଏଲ.—୧୩୪)

ବନମାଳୀ ସାମନ୍ତରାୟ ସ୍ୱରଚିତ ପୁସ୍ତକର ଶେଷରେ ନିଜ ବାସ-ସ୍ଥାନର ପରିଚୟ ଦେଇ ଲେଖିଛନ୍ତି—

"ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ହୃଦେ ଅନୁଗ୍ରହ ।
ଥିବା ହେତୁ ଚଣ୍ଡେଶ୍ୱର ଗ୍ରାମେ ଅଟେ ଗୃହ ହେ ॥
ମୂର୍ଖପଦ୍ୟେ ସାଧୁଜନେ ହରି ହରି ବୋଲ ।
ବନମାଳୀ ସାମନ୍ତରା ପ୍ରବନ୍ଧ କହିଲ ହେ" ॥

କବି ବନମାଳୀ ସମୁଦାୟ 'ବିଦଗ୍ଧମାଧବ ନାଟକ'ଟିର ସମ୍ପୂର୍ଣ୍ଣ ଅନୁବାଦ ନ କରି କେବଳ ସପ୍ତମ ଅଙ୍କର ଅନୁବାଦ ବିଷୟ ସ୍ୱରଚିତ 'ବର୍ଷାକାଳୀନ ରାସ' ପୁସ୍ତକରେ ସ୍ପଷ୍ଟଭାବରେ ଉଲ୍ଲେଖ କରିଛନ୍ତି—

ରାଧାର ସଙ୍ଗରେ କୃଷ୍ଣ ସଙ୍ଗେ ଚଳାଗିଲ ।
ବାର୍ଷିକ ଉତ୍ସବ ଲୀଳା ସମ୍ପୂର୍ଣ୍ଣ ହୋଇଲ ହେ ॥
ବିଦଗ୍ଧମାଧବ ଗ୍ରନ୍ଥ ସପ୍ତମ ଅଙ୍କରେ ।
ଶ୍ରୀରୂପ ଗୋସ୍ୱାମୀ ଯାହା କହି ଶ୍ରୀମୁଖରେ ହେ ॥
ସେହି ଅନୁସାରେ ଆମି ଚୂର୍ଣ୍ଣିକା ଶ୍ଳୋକର ।
କିଛି ଭାବ ପ୍ରକାଶିଲା ପ୍ରାକୃତ ବାକ୍ୟର ହେ ॥

× × ×

ଇତି ଶ୍ରୀ ରୂପଦେବ ବିରଚିତ ବିଦଗ୍ଧମାଧବ ସପ୍ତମାଙ୍କାନୁସାରଣୀ ବାର୍ଷିକ ଗ୍ରହଲୀଳା ସମାପ୍ତା" ।

ରୂପ ଗୋସ୍ୱାମୀଙ୍କ ଲିଖିତ 'ବିଦଗ୍ଧମାଧବ ନାଟକ' ଓଡ଼ିଶାରେ ଅତ୍ୟନ୍ତ ଲୋକପ୍ରିୟ ପୁସ୍ତକ ରୂପେ ଗୌଡ଼ୀୟ ଭକ୍ତମାନଙ୍କ ଗହଣରେ ପ୍ରଚଳିତ ହୋଇଥିଲା । ଉକ୍ତ ପୁସ୍ତକର ଏକାଧିକ ସଚିତ୍ର-ପୁସ୍ତକ ଓଡ଼ିଶାରେ ମିଳୁଛି । ଯଦୁନନ୍ଦନ ଦାସଙ୍କ ଅନୁବାଦ ମଧ୍ୟ ଓଡ଼ିଶାର ବହୁ ଅଞ୍ଚଳରୁ ସଂଗୃହୀତ ହୋଇ ରାଜ୍ୟସଂଗ୍ରହାଳୟରେ ସଂରକ୍ଷିତ ହୋଇଛି ।

ଓଡ଼ିଆ କବିମାନେ ହିନ୍ଦୀ, ବଙ୍ଗଳା ତଥା ବ୍ରଜବୋଲିରେ କବିତା ରଚନା କରୁଥିବାର ବହୁ ପ୍ରମାଣ ରହିଛି । ରାୟ ରାମାନନ୍ଦ ପଟ୍ଟନାୟକ, ମାଧବୀଦାସୀ, ଜଗନ୍ନାଥ ଦାସ, ବଳରାମ ଦାସ, ଭକ୍ତ ରାମ ଦାସ, ବାନକୃଷ୍ଣ ଦାସ, ପିଣ୍ଡିକ ଶ୍ରୀଚନ୍ଦନ, ବ୍ରଜନାଥ ବଡ଼ଜେନା ପ୍ରଭୃତି ଏ ଦିଗରେ ପ୍ରଭୂତ ଖ୍ୟାତି ଅର୍ଜନ କରିଛନ୍ତି । ବିଶେଷତଃ ଅଷ୍ଟାଦଶ ଶତାବ୍ଦୀର ଶେଷଭାଗର ରାଜକବି ଶ୍ୟାମସୁନ୍ଦର ଭଞ୍ଜ, ଊନବିଂଶ ଶତାବ୍ଦୀର ରାଜକବି ଗୌରଗଜପତି, ଗୌରଚନ୍ଦ୍ର ମାନସିଂହ ପ୍ରଭୃତି କବିମାନେ ଓଡ଼ିଆ ଓ ବଙ୍ଗଳାର ମିଶ୍ରଣରେ ଅଦ୍ଭୁତ କବିତାମାନ ରଚନା କରିଥିଲେ । ଖୁବ୍ ସମ୍ଭବତଃ ସେମାନଙ୍କର ଧାରଣା ଥିଲା—ବଙ୍ଗଳାରେ କବିତା ରଚନା ନ କଲେ ଗୌଡ଼ୀୟ ସନ୍ନ୍ୟାସୀଗଣ ଉଦ୍‌ବୁଦ୍ଧ ହେବେ ନାହିଁ । ତେଣୁ ସେମାନେ କୌଣସି ମତେ ଚେଷ୍ଟାକରି ବଙ୍ଗଳା ଓ ଓଡ଼ିଆ ଭାଷାର ମିଶ୍ରଣରେ କବିତାମାନ ରଚନା କରିଥିଲେ ।

କବି ବନମାଳୀ ସାମନ୍ତରା ଖୁବ୍ ସମ୍ଭବତଃ ଗୌଡ଼ୀୟ ଭାବାପନ୍ନ ହୋଇଥିବାରୁ, ସେ ମଧ୍ୟ ଅନୁରୂପ ମିଶ୍ରିତ ଭାଷାରେ 'ବର୍ଷାକାଳୀନ ରାସ' ବା କାର୍ଷିକ ରାସ ରଚନା କରିଥିଲେ । ତେଣୁ ତାଙ୍କ ରଚନା ସମୟ ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ଅଷ୍ଟମ ନବମ ଦଶକ ବୋଲି ଅନୁମାନ କରିବା ଅସମୀଚୀନ ହେବ ନାହିଁ । କବି ସାମନ୍ତରାୟଙ୍କ ରଚନାର କିୟଦଂଶ ଏଠାରେ ଉଦାହରଣ ସ୍ୱରୂପ ପ୍ରଦତ୍ତ ହେଲା—

"ବାର୍ଷିକ ରାସ ଉତ୍ସବେ ମନେ ମନେ ଭାବ ।
ବୃନ୍ଦାବନ ଶୋଭାଦେଖି କହେ ବୃନ୍ଦାଦେବୀ ॥
× × ×
ବୃନ୍ଦାଦେବୀ କହେ ତବେ ସୁନ ପୌର୍ଣ୍ଣମାସୀ ।
ସଂସାରସାର ରସେତେ ପ୍ରଥମେ ପ୍ରକାଶି ହେ ॥
ଶ୍ରୀକୃଷ୍ଣେର ରାଧା ଭୁଲେ କୁଞ୍ଜେର ବିଲାସ ।
କହିବାକୁ ଜନ ବାଞ୍ଛା କରଇ ଅବଶ୍ୟ ହେ ॥
× × ×
ଶ୍ରାବଣ ପୂର୍ଣ୍ଣିମୀ ଦିନେ କାନ୍ତ ସଙ୍ଗେ ମିଲେ ।
ସୌଭାଗିନୀ ଶ୍ରେଣୀରେ ଗଣିତ ହୋଏ ଭଲେ ହେ ॥

କବି ବନମାଳୀ ସାମନ୍ତରାୟ ଓଡ଼ିଆରେ କବିତା ରଚନା କରିବାକୁ ଯାଇ ମଝିରେ ମଝିରେ ବଙ୍ଗଳା ପଦ ମିଶାଇ ଦେଇ 'ବର୍ଷାକାଳୀନ ରାସ' ପୁସ୍ତକଟିକୁ ସମ୍ପୂର୍ଣ୍ଣ କରିଛନ୍ତି । ଖୁବ୍ ସମ୍ଭବତଃ 'ବଡ଼ ଉଦ୍ଧବ ଚଉତିଶା'ର ପ୍ରଣେତା ବନମାଳୀ ବା ହୀନ ବନମାଳୀ ବନମାଳୀ ସାମନ୍ତରାୟ ହୋଇ ପାରନ୍ତି !

କ୍ଷିତି ଭିତରେଣ କଥା ରହିଥାଉ
କୃଷ୍ଣଲାଗି ମରୁ ଅବଳା ।
କ୍ଷୋଭ ନ କର ଚଳଯାଅ ଉଦ୍ଧବ,
ହୀନ ବନା ଭାବେ ଭଣିଲ" ॥

(ବଡ଼ ଉଦ୍ଧବ ଚଉତିଶା, ରାଜ୍ୟ ସଂଗ୍ରହାଳୟ ପୋଥି O. L../751-I)

ସୁଚିତ୍ର ରାମାୟଣର ପ୍ରଣେତା ହରିଙ୍କ ପୁତ୍ର ବନମାଳୀ ଓ ପଦ୍ୟାବଳୀ ପ୍ରଣେତା ବନମାଳୀ ପଟ୍ଟନାୟକ ଏକ ବ୍ୟକ୍ତି ଥିବାର ଜଣାଯାଏ । ସୁଚିତ୍ର ରାମାୟଣର ଭାଷା, ଶୈଳୀ, ଛନ୍ଦଯୋଜନା ସହିତ ପଦ୍ୟାବଳୀର ବହୁ ସାମଞ୍ଜସ୍ୟ ଥିବାରୁ ଉଭୟ ବନମାଳୀଙ୍କୁ ଏକ ବ୍ୟକ୍ତି ବୋଲି ଆଲୋଚନା କରାଯାଇପାରେ ।

# ପଦ୍ୟାବଳୀ ପ୍ରଣେତା ବନମାଳୀ ଦାସ

**ପ**ଦ୍ୟାବଳୀ ପ୍ରଣେତା ବନମାଳୀ ଦାସ, ଗ୍ରନ୍ଥ ପ୍ରଣେତା ବନମାଳୀ ଓ ବାର୍ଷିକ ଗ୍ରନ୍ଥ ପ୍ରଣେତା ବନମାଳୀ ସାମନ୍ତରାୟଙ୍କ ଠାରୁ ସ୍ୱତନ୍ତ୍ର ବ୍ୟକ୍ତି ବୋଲି ଆଲୋଚନାରୁ ଜଣାଯାଏ । କବି ବନମାଳୀ ଓଡ଼ିଆ ଆଲୋଚକ-ମାନଙ୍କ ଦ୍ୱାରା ବହୁଭାବରେ ସମ୍ମାନିତ । କାରଣ ତାଙ୍କର ପଦ୍ୟାବଳୀ ଓଡ଼ିଆ ପଦ୍ୟାବଳୀ ସାହିତ୍ୟରେ ସ୍ୱତନ୍ତ୍ର ସ୍ଥାନ ଅଧିକାର କରେ । ଓଡ଼ିଆ ଭକ୍ତ ଜନତାଙ୍କ ମଧ୍ୟରେ ତାଙ୍କର ପଦ୍ୟାବଳୀ ଲୋକପ୍ରିୟ ଗୀତି କବିତା ରୂପେ ଆଦୃତ ହୋଇ ପାରିଛି ।

ବନମାଳୀ ଦାସଙ୍କ ପଦ୍ୟାବଳୀର ତିନୋଟି ଓଡ଼ିଆ ସଂସ୍କରଣ ଅଦ୍ୟାପି ଆଲୋଚକମାନଙ୍କର ହସ୍ତଗତ ହୋଇଛି । ପ୍ରଥମଟି ହେଉଛି—ବାବାଜୀ ବୈଷ୍ଣବ ଚରଣ ଦାସଙ୍କ ସଙ୍କଳନ । ୧୯୩୪ ମସିହାରେ ବାବାଜୀ ବୈଷ୍ଣବ ଚରଣ ଦାସ ବନମାଳୀ ପଦ୍ୟାବଳୀ ପୁସ୍ତକଟିକୁ ସଙ୍କଳନ କରି ସେଥିରେ ଏକ ଶହ ଅଠାନବେ ଗୋଟି ପଦ୍ୟ ସଂଯୋଜନ କରିଥିଲେ ।

ଉତ୍କଳ ବିଶ୍ୱବିଦ୍ୟାଳୟର ଗବେଷକ ପଣ୍ଡିତ ଫକୀରଚରଣ ଦାସ ଆଉ ଗୋଟିଏ ବୃହତ୍ ବନମାଳୀ ପଦ୍ୟାବଳୀ ୧୯୬୭ ସାଲରେ ସମ୍ପାଦନା କରିଛନ୍ତି । ପୁସ୍ତକଟି କଟକର ଧର୍ମଗ୍ରନ୍ଥ ଷ୍ଟୋର ଦ୍ୱାରା ପ୍ରକାଶିତ ହୋଇଛି । ଶ୍ରୀଯୁକ୍ତ ଦାସ ବାବାଜୀ ବୈଷ୍ଣବ ଚରଣ ଦାସଙ୍କ ଠାରୁ ଅଧିକ ସତୀଶତରିଶଟି ପଦ୍ୟ ସେଥିରେ ସନ୍ନିବେଶିତ କରି ମୋଟ ଦୁଇ ଶହ ପଞ୍ଚତିରିଶଟି ପଦ୍ୟ ବନମାଳୀଙ୍କର ରଚନା ରୂପେ ମତ ଦେଇଛନ୍ତି । ସେ ବନମାଳୀଙ୍କ ସମ୍ବନ୍ଧରେ ଦୀର୍ଘ ମୂଲ୍ୟବାନ ଗୃଢ଼ାବ୍ୟାପି ଆଲୋଚନା କରିଛନ୍ତି ।

୧୯୭୯ ସାଲରେ ଡକ୍ଟର ରତ୍ନାକର ଚଇନୀଙ୍କ ଦ୍ୱାରା ଲିଖିତ ମତୁର ପୃଷ୍ଠାବ୍ୟାପି ମୁଖବନ୍ଧ ସମ୍ବଳିତ ଖଣ୍ଡିଏ ପୁସ୍ତକ ପ୍ରକାଶ ପାଇଛି । ପୁସ୍ତକଟିର ନାମ 'କବି ବନମାଳୀ ଓ ତାଙ୍କ ପଦ୍ୟାବଳୀ' । କିନ୍ତୁ ଡକ୍ଟର ଚଇନୀଙ୍କ ସଙ୍କଳନରେ ବାବାଜୀ ଫକୀର ଚରଣଙ୍କ ସଙ୍କଳନ ଠାରୁ ଗୋଟିଏ ମାତ୍ର ପଦ୍ୟ ଊଣାଥିବାର ଜଣାଯାଏ । ସେହି ଗୀତଟି ହେଉଛି—

"ଆହେ ନାଗରବର !
କି ଅପରାଧ କରିଛି ସଖୀ ମୋର ।

× × ×

ଏବେ ତା ନୟନୁ ଆପ ବହୁ ଯେ ଅଛି ଅମାପ,
ଆହା ବୋଲୁନାହିଁ ଏ କି ମହାପାପ ।
ଯା । ପାଦଧୂଳି ବୋଳି ହୁଅ ଗାଢେ
ହେ ଏବେ ଚରଣ ଧରି,
କହୁଛି ବିନୟ କରି,
ଜୀବ ଥିଲେ ନ ଦେଖେ ପାପ ନେତ୍ରେ ।

× × ×

ବୋଇଲେ ବନମାଳୀ ଶୁଣି ସଖୀ ଭାଷା
ଶ୍ରୀକୃଷ୍ଣ କହନ୍ତି ହସି ଭୁତ ଥିଲି ପାଶେ ବସି,
କେଉଁ ଦିନ ଏଡ଼େ ଦୋଷକୁ ମୁଁ କି ଦୋଷୀ ?"

ଉଭୟ ଡକ୍ଟର ଚମ୍ପୁ ଓ ପଣ୍ଡିତ ଦାସ ବନମାଳୀ ଦାସଙ୍କ ଗୀତ-ଗୁଡ଼ିକର ରାଗ ଓ ତାଳ ନିର୍ଦ୍ଦେଶ କରିଛନ୍ତି ଏବଂ ପଦ୍ୟଗୁଡ଼ିକର ଶିରୋନାମା ଦେଇ ଆଲୋଚକ ତଥା ପାଠକମାନଙ୍କର ବହୁ ଉପକାର ସାଧନ କରିଛନ୍ତି । କିନ୍ତୁ ଉଭୟ ଆଲୋଚକଙ୍କ ଆଲୋଚନାର ଧାରା ଭିନ୍ନମୁଖୀ ।

ଡକ୍ଟର ଚମ୍ପୁ ଆଲୋଚନାର ଧାରାକୁ ପାଣ୍ଡିତ୍ୟପୂର୍ଣ୍ଣ ତଥା ଗବେଷଣାମୂଳକ କରିବାରେ ଯଥାସମ୍ଭବ ଚେଷ୍ଟା କରିଛନ୍ତି । ତାଙ୍କ ଆଲୋଚନାରେ ସେ ଏକାଧିକ ନାମଧାରୀ ବନମାଳୀ, ରୀତିଯୁଗ, ବନମାଳୀଙ୍କ ସମୟର ରାଜନୀତିକ ଚିତ୍ର; ସାମାଜିକ ପୃଷ୍ଠଭୂମି, ଧାର୍ମିକ ପରମ୍ପରା, ଜଗନ୍ନାଥ ଚେତନା, ସାହିତ୍ୟ ଧାରା, ବନମାଳୀଙ୍କ ସୃଷ୍ଟିରେ ରାଧା, କୃଷ୍ଣ ଓ ସଖୀବୃନ୍ଦ, ରସଧାରା, ରାଗ, ତାଳ, ଲୟ ଓ ଭାଷାର ଯାଦୁକରୀ ସ୍ପର୍ଶ ସମ୍ବନ୍ଧରେ ଗୁରୁତ୍ୱ ଆରୋପ କରିଛନ୍ତି । ପଣ୍ଡିତ ଫକୀର ଚରଣ ଦାସ ବନମାଳୀଙ୍କ ପରିଚୟ, ଧର୍ମମତ, ସାଂଗୀତିକ ମହତ୍ତ୍ୱ, ଓଡ଼ିଆ ପଦାବଳୀ ସାହିତ୍ୟର ପରମ୍ପରା, ରାଧାକୃଷ୍ଣ ପଦାବଳୀ ସାହିତ୍ୟରେ ଚଉଷଠି ରସ, ପୂର୍ବରାଗ ମାନ ପ୍ରଭୃତି, ଖଣ୍ଡିତା, କଳହାନ୍ତରିତାଦି ନାୟିକା

ଭେଦ, ପଦାବଳୀର ଭାବ ତଥା କବି ବନମାଳୀ ଓ ଶ୍ରୀ ଜଗନ୍ନାଥ ପ୍ରଭୃତି ସମ୍ପର୍କରେ ଆଲୋଚନା କରି ବନମାଳୀ ପଦ୍ୟାବଳୀର ଆତ୍ମିକ ପରିଚୟ ଦେବା ସଙ୍ଗେ ସଙ୍ଗେ ଆଧାତ୍ମିକ ଚିନ୍ତାଧାରା ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । ପଦ୍ୟଗୁଡ଼ିକୁ ସଜାଇବାରେ ମଧ୍ୟ ଉଭୟ ଆଲୋଚକଙ୍କ ଚିନ୍ତାଧାରାରେ ସାମାନ୍ୟ ପାର୍ଥକ୍ୟ ପରିଲକ୍ଷିତ ହୁଏ । ପଣ୍ଡିତ ଶ୍ରୀ ଦାସ ବାବାଜୀ ବୈଷ୍ଣବ ଚରଣଙ୍କ ଗ୍ରନ୍ଥ ଅନୁସରଣ କରିଥିଲେ ହେଁ ଉକ୍ତର ଚସ୍ପୂର୍ଣ୍ଣ ଅକ୍ଷରାନୁକ୍ରମରେ ସେଗୁଡ଼ିକୁ ସଜାଇଛନ୍ତି । ଉଭୟ ଆଲୋଚକଙ୍କଦ୍ୱାରା ପ୍ରଦତ୍ତ ପାଠରେ ମଧ୍ୟ ସାମାନ୍ୟ ବ୍ୟତିକ୍ରମ ଥିବାର ଦେଖାଯାଏ । ଅବଶ୍ୟ ଏ ପ୍ରକାର ବ୍ୟତିକ୍ରମ ନକଲକାରମାନଙ୍କ ଦୃଷ୍ଟିକୋଣରୁ ତଥା ଭିନ୍ନ ଭିନ୍ନ ଅଞ୍ଚଳର ଗାୟକମାନଙ୍କ ଗାନପଦ୍ଧତିରୁ ମିଳିଥାଏ । ତଦ୍‌ବ୍ୟତୀତ ଲେଖନକାରଙ୍କ ପ୍ରମାଦରୁ ମଧ୍ୟ 'ଦୀନ ବନମାଳୀ' 'ଦ୍ୱିଜ ବନମାଳୀ'ରେ ପରିଣତ ହୋଇ ଯାଆନ୍ତି । 'ବ୍ରଜରାଜ ସୁତ ଫାନ୍ଦେ ପଡ଼ି ମିତ' ଗୀତଟି ଓଡ଼ିଶା ରାଜ୍ୟ ସଂଗ୍ରହାଳୟର 'ରାଧିକା ବୋଲି' ଶୀର୍ଷକ ପୋଥି **(O.L./314-D)**ରେ—

"ନନ୍ଦିହିନ ଭଣେ ଦ୍ୱିଜ ବନମାଳୀ ଯୁଗଳ ପଦକୁ ଧାଉଛୁ' ବୋଲି ଭଣିତ ହୋଇଛି । କିନ୍ତୁ ଅନ୍ୟାନ୍ୟ ବହୁ ସ୍ଥଳରେ ତାହା 'ଦୀନ ବନମାଳୀ' ରୂପେ ସ୍ପଷ୍ଟ ପାଠଥିବାର ଦେଖାଯାଏ ।

ଶ୍ରୀକ୍ଷେତ୍ର ମଠମାନଙ୍କରେ ଏକ ସମୟରେ ଏକାଧିକ ବନମାଳୀ ନାମକ ବ୍ୟକ୍ତି ଥିବାର ପ୍ରମାଣ ମିଳୁଛି ।

ପୁରୀ ଗଙ୍ଗାମାତା ମଠର ପ୍ରତିଷ୍ଠାତା ଶ୍ରୀବୃନ୍ଦାବନ ଭକ୍ତ ନାମକ ଜନୈକ ବ୍ୟକ୍ତିଙ୍କୁ ବୈଷ୍ଣବ ମତରେ ଦୀକ୍ଷିତ କରାଇଥିଲେ । ଦୀକ୍ଷା ଗ୍ରହଣ ପରେ ତାଙ୍କର ନାମ ହୋଇଥିଲା ବନମାଳୀ ଦାସ । ଖୁବ୍ ସମ୍ଭବତଃ ଏହି ବନମାଳୀ ଦାସଙ୍କ ନାମ 'ଶ୍ରୀ ଜଗନ୍ନାଥ ଚରିତାମୃତ'ରେ ଉଲ୍ଲେଖ କରାଯାଇଛି । ସେ ଗୌଡ଼ୀୟ ପରମ୍ପରାର ଜନୈକ ବୈଷ୍ଣବ ଥିଲେ । ତାଙ୍କ ସମ୍ବନ୍ଧରେ ଲେଖିବାକୁ ଯାଇ ଦିବାକର ଦାସ କହିଛନ୍ତି—

"ଉଦ୍ଧବୋ ରାମଚନ୍ଦ୍ରଶ୍ଚ ଗୋପୀନାଥଶ୍ଚ ଶ୍ରୀହରିଃ ।
ବାମନୀ ନନ୍ଦନୋ ଗୌରୀ ଗୋପାଳାଖଣ୍ଡଳୌ ତଥା ।
ଜନାର୍ଦ୍ଦନ ପତିଃ କୃଷ୍ଣଦାସଶ୍ଚ ବନମାଳକଃ ॥"

ପ୍ରେମ ଦାସଙ୍କ ଅଂଶେ ସେହୁ ।
ଭକ୍ତି ସାଧିଲେ ମେଳ ହୋଇ ॥
କୃଷ୍ଣ ଦାସଙ୍କ ସେବା ଦେଖି ।
ସ୍ୱାମୀ ହୋଇଲେ ମହା ସୁଖୀ ॥
ନିତ୍ୟ କୃଷ୍ଣବଲ୍ଲଭ ସେହୁ ।
ଭକ୍ତି ସାଧିଲେ ସୁଖୀ ହୋଇ ॥
ଶ୍ରୀ ବନମାଳୀ ଯେ ଗୋସାଇଁ ।
ଭକ୍ତି ସାଧନ କଲେ ସେହୁ ॥
ନିତ୍ୟରେ ମଦନ ସୁନ୍ଦରୀ
ସେ ଅଂଶେ ଜାତ ବନମାଳୀ ॥

(ଶ୍ରୀ ଜଗନ୍ନାଥ ଚରିତାମୃତ, ବଡ଼ ଓଡ଼ିଆ ମଠ ପ୍ରକାଶନ—ପୃ ୧୮୮)

ଆଲୋଚ୍ୟ ବନମାଳୀଙ୍କ ସମ୍ବନ୍ଧରେ ଆଲୋଚନା କରି ବାବାଜୀ ଫକୀର ଚରଣ ଦାସ ଲେଖିଛନ୍ତି—

"ଗଙ୍ଗାମାତା ମଠର ଶ୍ରୀ ବନମାଳୀ ଦାସ ଯୁବକ ଅବସ୍ଥାରେ ଭେକାଶ୍ରିତ ବୈଷ୍ଣବ ହୋଇଥିଲେ । ତାଙ୍କର ପ୍ରକୃତ ନାମ ଥିଲା ବନମାଳୀ ଦାସ ।

× × ×

"ଗଙ୍ଗାମାତାଙ୍କ ଶିଷ୍ୟ ବନମାଳୀ ଦାସ ଗଙ୍ଗାମାତା ମଠର ମହନ୍ତ ଥିଲେ ଓ ଖେମଣ୍ଡି ରାଜା ଅନନ୍ତ (ଅନଙ୍ଗ) ଭୀମଦେବ ତାଙ୍କର ଶିଷ୍ୟ ହୋଇ ବାଲିଯୋଡ଼ୀ ଓ ଭୁରୁକୀ ନାମରେ ଦୁଇଟି ଗ୍ରାମ ଓ ସ୍ୱର୍ଣ୍ଣମୁଦ୍ରା ପ୍ରଦାନ କରିଥିଲେ ।"

(ବନମାଳୀ ପଦ୍ୟାବଳୀ, ଧର୍ମଗ୍ରନ୍ଥ ଷ୍ଟୋର ପୃ—୩-୪)

ପୁଷ୍ପ ରଘୁନନ୍ଦନ ପାଠାଗାରରେ ଥିବା 'ଗୁରୁପ୍ରଣାଳୀ' ଶୀର୍ଷକ ପୁସ୍ତକରୁ ଜଣାଯାଏ—

"ମହାକବି ଜଗନ୍ନାଥ ଦାସସ୍ତତ୍ର ପରମ୍ପରକଃ ।
ବନମାଳୀ ତତଶ୍ଚାଭୂତ୍ କେଳୀକୃଷ୍ଣସ୍ତୁତଃ ପରମ୍" ॥

ପ୍ରୋକ୍ତ ଆଲୋଚନାରୁ ଜଣାଯାଏ ଯେ, ବନମାଳୀ ଦାସ ଜନୈକ ବୈଷ୍ଣବ ଥିଲେ ଏବଂ ଜଗନ୍ନାଥ ଦାସଙ୍କ ଶିଷ୍ୟ ପରମ୍ପରାର ଅନ୍ୟତମ ଶିଷ୍ୟରୂପେ ଖ୍ୟାତି ଅର୍ଜନ କରିଥିଲେ । ସେହି ବନମାଳୀ ଦାସ ଗଞ୍ଜାମ ଜିଲ୍ଲାର ବଡ଼ଖେମୁଣ୍ଡି ରାଜ୍ୟର ପ୍ରସିଦ୍ଧ ରାଜା ପୁରୁଷୋତ୍ତମ ଅନଙ୍ଗ ଭୀମଦେବଙ୍କୁ ପ୍ରଭାବିତ କରାଇ ତାଙ୍କୁ ଶ୍ରୀରାଧାକୃଷ୍ଣ ଭକ୍ତିଭାବରେ ଆପ୍ଲୁତ କରାଇ ଥିଲେ । ପୁରୁଷୋତ୍ତମ ଅନଙ୍ଗ ଭୀମଦେବ 'କୃଷ୍ଣକେଳୀ ତରଙ୍ଗିଣୀ' ଶୀର୍ଷକ ଖଣ୍ଡିଏ ପୁସ୍ତକ ଲେଖିଛନ୍ତି । ପୁସ୍ତକଟି ଶ୍ରୀରାଧାକୃଷ୍ଣଙ୍କ ଲୀଳାରେ ମୁଖରିତ ହୋଇଛି । କିନ୍ତୁ ସେହି ବୈଷ୍ଣବ ବନମାଳୀ ଦାସଙ୍କ ନାମରେ କୌଣସି ଗୀତ କିମ୍ବା ପୁସ୍ତକ ଥିବାର ପ୍ରମାଣ ମିଳେ ନାହିଁ । ବଡ଼ଖେମୁଣ୍ଡିର ରାଜା ପୁରୁଷୋତ୍ତମ ଅନଙ୍ଗ ଭୀମଦେବଙ୍କ ସମୟରେ ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗ ହୋଇଥିବାରୁ, ତାଙ୍କର ଦୀକ୍ଷାଗୁରୁ ବନମାଳୀ ଦାସ ସେହି ସମୟର ବ୍ୟକ୍ତି ଥିବାରେ ସନ୍ଦେହ ନାହିଁ ।

'ସୁଚିତ୍ର ରାମାୟଣ' ବା 'ରାମଚମ୍ପୂ' ଖଣ୍ଡିଏ ପୁସ୍ତକର ପ୍ରଣେତା ହେଉଛନ୍ତି—ବନମାଳୀ । ଭୋଜରାଜଙ୍କ ଲିଖିତ ପ୍ରସିଦ୍ଧ ସଂସ୍କୃତ ଚମ୍ପୂ ଗ୍ରନ୍ଥ 'ରାମାୟଣ ଚମ୍ପୂ'ର ଅନୁବାଦ କରି କବି ବନମାଳୀ ନିଜ ପିତା ହରିଙ୍କ ନାମରେ ଭଣିତା କରିଛନ୍ତି ।

"ନାମ ମୋର ବନମାଳୀ ପିତା ନାମ ହରି ।
ତାହାଙ୍କର ନାହିଁ କୀର୍ତ୍ତି ପ୍ରାସାଦ ପୋଖରୀ ଯେ ॥
ଅକାଳଗଳସ୍ତନ ପରି ମୁଁ ତାହାଙ୍କ ପୁତ୍ର ।
ନାହିଁ ମୋର ଧନ ତୀର୍ଥାଟନ ଶ୍ରାଦ୍ଧ ପତ୍ର ହେ ॥

କରୂପେ ପିତୃଋଣରୁ ହୋଇବ ମୁକତ ।
ଏହେନେ ବସି ଏହା ବର୍ଣ୍ଣିଲା ମୋର ଚିତ୍ତ ହେ ॥
ତାଙ୍କ ନାମେ ରାମଚମ୍ପୂ ଗୀତ କଲି ତୋଷେ ।
ଶ୍ରୀରାମଚନ୍ଦ୍ର ବନୋଦ ଯାନଦର ରାସେ ଯେ" ॥

(ସୁଚିତ୍ର ରାମାୟଣ, ଲଙ୍କାକାଣ୍ଡ)

କବି ବନମାଳୀ 'ରାମଚମ୍ପୂ' କାବ୍ୟଟି ଚଉପଦୀ ଗୀତରେ ରଚନା କରି ନିଜ ପିତାଙ୍କ ସ୍ମୃତି ଉଦ୍ଦେଶ୍ୟରେ ଅର୍ପଣ କରି ଦର୍ଶାଇଛନ୍ତି ଯେ, ତାଙ୍କ ପିତା ସେପରି କୀର୍ତ୍ତିମାନ ନ ଥିଲେ, ତେଣୁ ପିତୃଋଣରୁ ମୁକ୍ତ ହେବାଲାଗି ସେ 'ରାମଚମ୍ପୂ' ଚଉପଦୀ ରତ୍ନମାଳାଟିକୁ ପିତୃଦେବଙ୍କ ସ୍ମୃତି ଉଦ୍ଦେଶ୍ୟରେ ଅର୍ପଣ କରି ନିଜ ପୁତ୍ରତ୍ୱର ସାର୍ଥକତା ପ୍ରତିପାଦନ କରିଛନ୍ତି ।

ଏହି ଚଉପଦୀ ରତ୍ନମାଳାରେ ସେ ସମ୍ବତ୍ସର ସଂଖ୍ୟକ ଚଉପଦୀ-ରତ୍ନ ଗୁନ୍ଥି ଥିବାର ଆଭାସ ଦେଇ, ପ୍ରତିଦିନ ଗୋଟିଏ ଲେଖାଏଁ ରତ୍ନ କଣ୍ଠ-ତଟରେ ମଣ୍ଡିବାକୁ ପାଠକ ତଥା ଭକ୍ତ-ଜନତାଙ୍କୁ ଅନୁରୋଧ ଜଣାଇଛନ୍ତି ।

"ଗଢ଼ିଛୁ ଏ ଚଉପଦୀ ରତ୍ନମାଳା ମୁହିଁ ।
କଣ୍ଠତଟେ ମଣ୍ଡ ରସିକେ ନିଃଶଙ୍କ ହୋଇ ହେ ॥

× × ×

ଗୋଟିଏ ଲେଖାଏଁ କଣ୍ଠତଟେ ଧରି ଧୀର ।
ସମ୍ବତ୍ସର ପୂର୍ଣ୍ଣ ହେବ ଭେଦିବ ଅନ୍ତର ହେ ॥
ସମ୍ବତ୍ସର ଦିନ ସଂଖ୍ୟା ଚଉପଦୀ ଏହି ।
ରସିକ ସହୃଦେ ହେଲେ ଦେଖ ମନ ଦେଇ ହେ" ॥

(ସୁଚିତ୍ର ରାମାୟଣ, ଲଙ୍କାକାଣ୍ଡ)

କିନ୍ତୁ ଶ୍ରୀମତୀ ପ୍ରମିଳା ମିଶ୍ରଙ୍କ ଦ୍ୱାରା ସମ୍ପାଦିତ ତଥା ଓଡ଼ିଶା ପର୍ଯ୍ୟଟନ ଓ ସାଂସ୍କୃତିକ ବ୍ୟାପାର ବିଭାଗ ଦ୍ୱାରା ପ୍ରକାଶିତ 'ସୁଚିର ସ୍ମରଣ' ପୁସ୍ତକରେ ତିନିଶହ ଶତାବନଟି ଗୀତ ରହିଛି ।

ଶ୍ରୀମତୀ ମିଶ୍ରଙ୍କ ପ୍ରଦତ୍ତ ପାଠରେ କବି ବନମାଳୀଙ୍କ ବାସସ୍ଥାନ ସମ୍ବନ୍ଧରେ କୌଣସି ଆଭାସ ନ ଥିଲେ ମଧ୍ୟ ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ O. L./1503 ସଂଖ୍ୟକ ପୋଥି ଓ ପୁରୀ ରଘୁନନ୍ଦନ ପାଠାଗାର ପୋଥିରେ ବନମାଳୀଙ୍କ ବାସସ୍ଥାନ ସମ୍ପର୍କରେ ନିମ୍ନଲିଖିତ କେତୋଟି ପଙ୍‌କ୍ତି ଥିବାର ଦେଖାଯାଏ । ସେଥିରୁ ଜଣାଯାଏ ଯେ, କବି ବନମାଳୀ ଶ୍ରୀକ୍ଷେତ୍ରର ଦୋଳମଣ୍ଡପ ସାହିର କରଣ କୁଳରେ ଜନ୍ମ ଗ୍ରହଣ କରିଥିଲେ ।

"ଘର କ୍ଷେତ୍ର ବଡ଼ ଦେଉଳ ମଣ୍ଡପ ସାହିରେ ।
ଜନମ କରଣ କୁଳେ ଅଟଇ ମହୀରେ ହେ ॥
ନାମ ମୋହର ବନମାଳୀ ଦାସ ପିତା ହରି ।
ତାଙ୍କର ନାହିଁ କୀର୍ତ୍ତି ପ୍ରସାଦ ପୋଖରୀ ହେ" ॥

(ରାଜ୍ୟସଂଗ୍ରହାଳୟ ପୋଥି O. L./1503)

"ଘର କ୍ଷେତ୍ରବରେ ଦୋଳମଣ୍ଡପ ସାହିରେ ।
ଜନମ କରଣ କୁଳେ ଅଟଇ ମହୀରେ" ॥

(ରଘୁନନ୍ଦନ ପାଠାଗାର ପୋଥି)

ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, କବି ବନମାଳୀ କରଣ ପରିବାରରେ ଜନ୍ମ ହୋଇଥିଲେ । ଶ୍ରୀକ୍ଷେତ୍ରର ଅନ୍ୟତମ ପ୍ରଧାନ ସାହି ଦୋଳମଣ୍ଡପ ସାହିରେ ତାଙ୍କର ବାସସ୍ଥାନ ଥିଲା ।

କବି ବନମାଳୀ ତାଙ୍କ 'ରାମଚମ୍ପୂ' ପୁସ୍ତକରେ ଶେଷ ଗୀତରେ ଖୁର୍ଦ୍ଧା ରାଜା ବୀରକେଶରୀ ଦେବ (ପ୍ରଥମ)ଙ୍କୁ ଏପରି ଭାବରେ ବର୍ଣ୍ଣନା କରିଛନ୍ତି ଯେ ତାହାକୁ କବିଙ୍କର ସ୍ତୁତିପାଠ ବ୍ୟତୀତ ଅନ୍ୟକିଛି କୁହାଯାଇ ପାରିବ ନାହିଁ । କାରଣ କବି ବନମାଳୀ ସ୍ୱରଚିତ 'ରାମଚମ୍ପୂ'ର କାଳ ନିରୂପଣ ପ୍ରସଙ୍ଗରେ ରାଜା ବୀରକେଶରୀ ଦେବଙ୍କ ନାମ ସ୍ମରଣ କରିଛନ୍ତି । ସେହି ପ୍ରସଙ୍ଗରେ ସେ କେବଳ ଶକାବ୍ଦ ବ୍ୟବହାର କରିଥିଲେ ଯଥେଷ୍ଟ ହୋଇ-ଥାନ୍ତା କିମ୍ବା ସୌଜନ୍ୟ ଦୃଷ୍ଟିରୁ ତଥା ଓଡ଼ିଆ ଅଙ୍କ ଗଣନାରେ ଠାକୁର

ରାଜାଙ୍କ ନାମ ରହିବା ବିଧେୟ ବୋଲି ସେ କେବଳ ରାଜାଙ୍କ ନାମ ମାତ୍ର ଉଲ୍ଲେଖ କରି, ସେ ସମୟର ଅଙ୍କ ବା ରାଜତ୍ୱର ବର୍ଷ ସଂଖ୍ୟାର ଉଲ୍ଲେଖ କରିଥିଲେ ପାଠକମାନଙ୍କ ପକ୍ଷରେ ପୁସ୍ତକ ରଚନାର ସମୟ ଜାଣିବାରେ ଆଦୌ ଅସୁବିଧା ହୋଇ ନ ଥାନ୍ତା ! କିନ୍ତୁ କବି ବନମାଳୀ ଯେପରି ଭାବରେ ବହୁଚର୍ଚ୍ଚିତ କରି ବୀରକେଶରୀ ଦେବଙ୍କ ନାମୋଲ୍ଲେଖ କରିଛନ୍ତି, ସେଥିରୁ ସ୍ପଷ୍ଟ ଜଣାଯାଏ ଯେ, ଖୁର୍ଦ୍ଧା ରାଜାଙ୍କର ବିଶେଷ କୃପାପାତ୍ର ଥିଲେ । ତେଣୁ ସ୍ୱରଚିତ ପୁସ୍ତକରେ ସେ ଆନୁଗତ୍ୟ ପ୍ରକାଶ କରିବାକୁ ଯାଇ ରାଜାଙ୍କର ଗୁଣଗାନ କରିଛନ୍ତି ।

"ଖଣ୍ଡି ପରିମ୍ପାପକୁଳକରୀନ୍ଦ୍ର କେଶରୀ ।
ନିଜ କୁଳ କୁମୁଦକୁ ସଚ୍ଚନ୍ଦ୍ର ଶର୍ବରୀ ସେ ॥
ଅରିନାରୀନେତ୍ରବାରି ଜାତରେ କୁଶଳ ।
ମାଳଗିରୀଶ୍ୱରଭକ୍ତି ବର୍ଗରେ ପ୍ରବର ସେ ॥
ସର୍ବଧୈର୍ଯ୍ୟ ଖଣ୍ଡନ ଯାହାର ଅପଘନ ।
ଦୁଃଖରାଶିଦାବଦହନକୁ ନବଘନ ସେ ॥
ଗଜପତି ଭୂପତିତିଳକ ଗୁଣଗ୍ରାହୀ ।
କ୍ଷମାଶୀଳ ଦୟାବନ୍ତ ନୃପକୁଳେ ନାହିଁ ଯେ ॥
ଶ୍ରୀବୀରକେଶରୀ ଦେବ ଅବନୀ ଦୟିତ ।
ତାଙ୍କ ନବ୍ୟୋବିଂଶ ଅଙ୍କେ ପୂର୍ଣ୍ଣ ହେଲା ଗୀତ ଯେ ॥
ରସ ଋଷି ଋତୁ ଶଶୀ ଶକାବ୍ଦରେ ଜାଣ ।
ଏହି ଚରିତ ପୂର୍ଣ୍ଣହେଲେ ଶୁଣ ବିଚକ୍ଷଣ ହେ ॥"

ଏହି ଅଙ୍କ ଗଣନା ଓ ଶକାବ୍ଦ ଗଣନାରୁ ଜଣାଯାଏ ଯେ ବୀରକେଶରୀ ଦେବଙ୍କ ନବ୍ୟୋବିଂଶ ଅଙ୍କ **୧୬୭୬** ଶକାବ୍ଦରେ ପଡ଼ିଥିଲା । ବୀରକେଶରୀ ଦେବ (୧ମ) ଖ୍ରୀ:ଅ: ୧୭୩୬-୧୭୯୩ ପର୍ଯ୍ୟନ୍ତ ଖୁର୍ଦ୍ଧା ରାଜସିଂହାସନରେ ଅଧିଷ୍ଠିତ ଥିବାରୁ ତାଙ୍କର ୨୯ତମ ଅଙ୍କ ଖ୍ରୀ:ଅ: ୧୭୫୮ରେ ପଡ଼ିଥିଲା ।

କବି ବନମାଳୀ ଶ୍ରୀରାମଲୀଳାମୂଳକ 'ରାମଚର୍ଯ୍ୟା'ର ପ୍ରବୃତ୍ତ ନିମିତ୍ତି ଚଉପଦୀ ଗୀତରେ ଭୋଜରାଜଙ୍କ 'ରାମାୟଣଚମ୍ପୂ'ର ଅନୁବାଦ

କରିଥିଲେ ହେଁ, ମୂ ମ୍ରକର ପ୍ରାରମ୍ଭ ଅର୍ଥାତ୍ ମଙ୍ଗଳାଚରଣରେ 'ଗୋପୀନାଥ, ରାଧିକା ଜୀବନ, ଗୋକୁଳ ଆନନ୍ଦ, ଯଶୋଦା ନନ୍ଦନ, ପୂତନାମର୍ଦ୍ଦନ, ଗୋବର୍ଦ୍ଧନଧାରୀ, ବ୍ରଜବଧୂ-ରାସମଣ୍ଡଳ-ବିହାରୀ, ବୃଷଭାନୁସୁତାକଉତୁକକାରୀ, ତଥା ବୃନ୍ଦାବନନାଥ, ବ୍ରଜରାଜସୁତ, ମୁରଲୀବଦନ ତଥା ନବଘନ-ଶ୍ୟାମଙ୍କୁ ସ୍ତୁତି କରିଛନ୍ତି ।

"ଜୟ ଜୟ ଗୋପୀନାଥ ରାଧିକା ଜୀବନ ।
ଜୟ ଗୋକୁଳ ଆନନ୍ଦ ଯଶୋଦା ନନ୍ଦନ ହେ ॥
ଜୟ ଦୁଷ୍ଟ ନିଶାଚର—କୁଳ ନଷ୍ଟକାରୀ ।
ଜୟ ପୂତନା ମର୍ଦ୍ଦନ ଗୋବର୍ଦ୍ଧନ ଧାରୀ ହେ ॥
ଜୟ ବ୍ରଜବଧୂ ରାସମଣ୍ଡଳ ବିହାରୀ ।
ଜୟ ବୃଷଭାନୁ ସୁତା କଉତୁକକାରୀ ହେ ॥
ଜୟ ନବଘନ ଶ୍ୟାମ ମୁରଲୀ ବଦନ ।
ଜୟ ବ୍ରଜରାଜ ସୁତ ନଳିନ ନୟନ ହେ ॥
ଜୟ ବୃନ୍ଦାବନ ନାଥ ହେ ମୁରଲୀ ଦାତ ।
କୃପାକରି ମନୋରଥ କର ମୋର ସାର୍ଥ ହେ ॥
ତୁମ୍ଭ ପଙ୍କଜ-ଚରଣେ ମତି ରହୁ ନିତି ।
ଅତି ଦୀନମ୍ଳାନ ହରି ଏ ରୂପେ ବିନତି ହେ ॥"

ପ୍ରାଚୀନ କବିମାନେ ଯେ କୌଣସି ବିଷୟରେ କବିତା ରଚନା କରୁଥିଲେ ମଧ୍ୟ ଗ୍ରନ୍ଥର ମଙ୍ଗଳା ଚରଣରେ ନିଜ ଇଷ୍ଟ ଦେବଙ୍କ ନାମ ସ୍ମରଣ ପୂର୍ବକ ବିଷୟ ବସ୍ତୁର ଆରମ୍ଭ କରିଥାନ୍ତି । ଅବଶ୍ୟ ପ୍ରତ୍ୟେକ କବି ଯେ ଏପ୍ରକାର ଶୈଳୀ ଅବଲମ୍ବନ କରିଛନ୍ତି, ତା' ନୁହେଁ ! ତଥାପି ବହୁ ଓଡ଼ିଆ କବି ନିଜ ଇଷ୍ଟଦେବଙ୍କୁ ସମ୍ମାନର ସହିତ ସ୍ତୁତି କରିବାର ପରମ୍ପରା ସାରଳା ଦାସଙ୍କ ଯୁଗରୁ ଅନୁସୃତ ହୋଇ ଆସୁଛି ।

କବି ବନମାଳୀ ଦାସ ଶ୍ୟାମସୁନ୍ଦର ଶ୍ରୀକୃଷ୍ଣଙ୍କ ଭକ୍ତିଧାରାରେ ନିଜକୁ ଭସାଇ ଦେଇଥିବାରୁ, ସେ ଗ୍ରନ୍ଥର ଆରମ୍ଭରେ ଉପରୋକ୍ତ ସ୍ତୁତି ପାଠ କରି, ବିଷୟ ବସ୍ତୁର ଆରମ୍ଭ କରିଛନ୍ତି । ତେଣୁ ଉକ୍ତ ଭାବରେ ଧାରଣା

କରିହୁଏ ଯେ, କବି ବନମାଳୀ ଜଣେ ନିଷ୍ଠାପର କୃଷ୍ଣଭକ୍ତ ଥିଲେ ଏବଂ ପିତାଙ୍କ ନାମରେ ଉତ୍ସର୍ଗ କରିବା ଉଦ୍ଦେଶ୍ୟରେ 'ରାମଚମ୍ପୂ' ଶୀର୍ଷକ ପୁସ୍ତକଟି ଭୋଜଦେବଙ୍କ ଚମ୍ପୂର ଅବଲମ୍ବନରେ ରଚନା କରିଥିଲେ ।

ଆହୁରି ମଧ୍ୟ ଜଣାଯାଏ ଯେ, କବି ବନମାଳୀ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ସେବକ ସ୍ୱର୍ଗତଃ ଲକ୍ଷ୍ମଣ ଚଳଞ୍ଚୋଙ୍କ ସ୍ୱପ୍ନାଦେଶ ପାଇ 'ରାମଚମ୍ପୂ' ଚଉପଦୀ ଆରମ୍ଭ କରିଥିଲେ, ଖୁବ୍ ସମ୍ଭବତଃ ଲକ୍ଷ୍ମଣ ଚଳଞ୍ଚୋ ଜଣେ ପ୍ରଖ୍ୟାତ ସଙ୍ଗୀତଜ୍ଞ ଥିଲେ ଏବଂ ତାଙ୍କର ଠାରୁ ବନମାଳୀ ବାଲ୍ୟକାଳରେ ସଙ୍ଗୀତ ଶିକ୍ଷା କରିଥିଲେ ! ତେଣୁ ଗୁରୁଙ୍କର ସ୍ୱର୍ଗବାସ ପରେ ତାଙ୍କ ସ୍ୱପ୍ନାଦେଶକୁ ଗୁରୁଙ୍କ ସ୍ୱର୍ଗତ ଆତ୍ମାର ଅଭିଳାଷ ବୋଲି ମନେକରି କବି 'ଚଉପଦୀ' ରଚନାରେ ପ୍ରବୃତ୍ତ ହୋଇଥିଲେ ।

କୁଶଳେ ଏ ଭୋଜରାଜ ଚମ୍ପୂ ଗୀତ ମୋର ।
ସମ୍ପୂର୍ଣ୍ଣ ହୋଇଲା ଯେଉଁ ବଳୁ ଶୁଣ ଧୀର ହେ ॥
ସଲକ୍ଷଣ ଶ୍ରୀଲକ୍ଷ୍ମଣ ଚଳଞ୍ଚୋ ସ୍ୱପ୍ନରେ ।
ବୋଇଲେ କର ଏ ଗୀତ ନିର୍ଭୟ ମନରେ ଯେ ॥
ସେହି ଆଜ୍ଞା ମୂଳ କରି କଲି ଚଉପଦୀ ।
ମହନ୍ତ ଆଜ୍ଞାକୁ ହୃଦ ସପୁଟେ ସମ୍ପାଦ ଯେ ॥

× × ×

ବୋଇଲେ ହେ ସୂତ ରାମଚମ୍ପୂ ଗୀତ
ଶୁଣି ତୃପ୍ତ ହେଲା ଚିତ୍ତ ।
ଉତ୍ତମ ସେ ହେଲା ଶ୍ରୁତି କ ମୋହିଲା
କରି ତୁ ତା ସମାପତ ॥
ଏମନ୍ତ ମହନ୍ତ ସ୍ୱପ୍ନାଦେଶ ପାଇ
ପ୍ରବର୍ତ୍ତିଲି ଏଥି ଧୀରେ ।
ଦେଶ ଭାଷାରେ ଚଉପଦୀ ବାନ୍ଧିଲି
ନିଃଶଙ୍କ ହୋଇ ମନରେ ॥"

(ସ୍ତୁତିଚିନ୍ତାମଣି—ପୃ—୧୦୫)

ଖୁବ୍ ସମ୍ଭବତଃ ଲକ୍ଷ୍ମଣ ତଳଛୋଙ୍କ ଠାରୁ ସଙ୍ଗୀତ ବିଦ୍ୟାରେ ଧୂରନ୍ଧର ହେବାପରେ, କବି ବନମାଳୀ କବିତା ରଚନା ପ୍ରତି ଆକୃଷ୍ଟ ହୋଇଥିଲେ । ପ୍ରଥମେ ସେ ଦୁଇଟି ଗୋଟି ଗୋଟି ଚଉପଦୀ ରଚନାରେ ପ୍ରବୃତ୍ତ ହୋଇଥିଲେ । ତତ୍ପରେ ଗୁରୁଦେବଙ୍କ ଠାରୁ ସ୍ୱପ୍ନାଦେଶ ପାଇ ଭୋଜରାଜାଙ୍କ 'ରାମାୟଣଚମ୍ପୂ'ର ଅନୁବାଦଟି ତାଙ୍କ କବି ଜୀବନର ପ୍ରଥମ ପୁସ୍ତକ ହୋଇଥିବାରୁ, ତାଙ୍କ କାବ୍ୟ ରସାମୃତର ପ୍ରଥମ ମଧୁପର୍କ ପିତୃଦେବଙ୍କ ଶ୍ରୀଚରଣରେ ଅର୍ପଣ କରିଥିଲେ । ତେଣୁ 'ରାମଚମ୍ପୂ' ଚଉପଦୀଟି କବି ବନମାଳୀଙ୍କର ପ୍ରଥମ ରଚନା ରୂପେ ଗ୍ରହଣ କରିବା ଅସମୀଚୀନ ନୁହେଁ !

କବି ବନମାଳୀ ଜଣେ ପ୍ରସିଦ୍ଧ ସଙ୍ଗୀତଜ୍ଞ ଥିବାର ପ୍ରମାଣ 'ସୂଚିତ-ରାମାୟଣ' ପୁସ୍ତକରୁ ମିଳୁଛି । ଭୋଜରାଜାଙ୍କ 'ରାମାୟଣଚମ୍ପୂ' ଗ୍ରନ୍ଥଟି ସଂସ୍କୃତର ଚମ୍ପୂ ନିୟମରେ ଲିଖିତ ; ଅର୍ଥାତ୍ ସେଥିରେ ଗଦ୍ୟ ଓ ପଦ୍ୟରେ ବିଷୟ ବସ୍ତୁର ବର୍ଣ୍ଣନା କରାଯାଇଛି । କିନ୍ତୁ କବି ବନମାଳୀ ନିଜ ଅନୁବାଦ-ଟିକୁ ସମ୍ପୂର୍ଣ୍ଣ ପଦ୍ୟରେ କରିଛନ୍ତି । ସେହି ପଦ୍ୟ ରଚନାକୁ ସୁଗେୟ କରିବା ନିମିତ୍ତ କବି ପ୍ରାୟ ବୟାଅଶୀଟି ରାଗ ଏବଂ ଅଧିକାଂଶ ରାଗର ତାଳ ନିରୂପଣ କରି ଅଛନ୍ତି । କବି ବନମାଳୀ ଯେଉଁ ରାଗ ଓ ତାଳର ସ୍ପଷ୍ଟ ନିର୍ଦ୍ଦେଶ ଦେଇ ନାହାନ୍ତି ; ସେପରି ସ୍ଥଳରେ ପୂର୍ବବର୍ତ୍ତୀ କବିଙ୍କ ରଚନାର ପ୍ରଥମ ପାଦଟିକୁ 'ବୃତ୍ତ' ରୂପେ ଗ୍ରହଣ କରିଛନ୍ତି । ଆଉ କେତେକ ସ୍ଥଳରେ ରାଗ ନିର୍ଦ୍ଦେଶ କରିଥିଲେ ସୁଦ୍ଧା ଗୋଟିଏ ବୃତ୍ତ ନିର୍ଦ୍ଦେଶ କରି ପ୍ରଚଳିତ ଗାନ ରୀତିକୁ ସହଜ କରିଛନ୍ତି । କବି ବନମାଳୀ ଯେଉଁ ରାଗ ନିର୍ଦ୍ଦେଶ କରିଛନ୍ତି ସେ ଗୁଡ଼ିକ ହେଉଛି—

"ଆନନ୍ଦ ଭୈରବ, ଆଶାବରୀ, ଆହାରୀ, ଇମନ କଲ୍ୟାଣ, କକୁଭ, କଲ୍ୟାଣ, କନଡ଼ା, କର୍ଣ୍ଣାଟ ଗୌଡ଼ା, କରୁଣାଶ୍ରୀ, କଳହଂସ, କଳହଂସ କଲ୍ୟାଣ, କଳହଂସ କେଦାର, କଲ୍ୟାଣ ଆହାରୀ, କାନଡ଼ା ଗୌଡ଼ା, କାଫୀ, କାଫୀ ମୁଖାରୀ, କାମୋଦୀ, କାଳୀ, କୁମ୍ଭକାମୋଦୀ, କେଦାର, କେଦାର କାମୋଦୀ, କେଦାର ଗୌଡ଼ା, କୋଳାହଳ, କୌଶିକ, ଗୁଜ୍ଜରୀ, ଗୌରୀ, ଘଣ୍ଟାରବ, ଚକ୍ରକେଦାର, ଚକ୍ରଦେଶାକ୍ଷ, ଚୋଖି, ଜୟ ଜୟନ୍ତ, ତୋଡ଼ିପରଜ, ତୋଡ଼ିପୁରବୀ, ତୋଡ଼ି ମୁଖାରୀ, ଦକ୍ଷିଣ-କାମୋଦୀ, ଦକ୍ଷିଣ ତୋଡ଼ି, ଦକ୍ଷିଣଶ୍ରୀ, ଦେଶାକ୍ଷ, ଦେଶୀକାମୋଦୀ,

ଦେଶୀତୋଡ଼ି, ଧନାଶ୍ରୀ, ଧନୁକେଦାର, ନଟ, ନଳିନୀଗୌଡ଼ା, ପଞ୍ଚମ ବରାଡ଼ି, ପରଜ, ପାଳି, ପାହାଡ଼ିଆ, ପାହାଡ଼ିଆ କେଦାର, ପୂରବୀ, ବଙ୍ଗାଳଶ୍ରୀ, ବରାଡ଼ି, ବସନ୍ତ, ବେଲବଳୀ, ଭଟିଆରୀ, ଭୂପାଳ, ଭୈରବ, ମଙ୍ଗଳ, ମଙ୍ଗଳ ଗୁଜ୍ଜରୀ, ମରୁଆ, ମହ୍ଲାର, ମାଳବ କେଦାର, ମାଳଶ୍ରୀ, ମୁଖାବରୀ, ମୁଖାରୀ, ମୁଖାରୀ କାମୋଦୀ, ମୋହନ କେଦାର, ରାମକେରୀ, ରେହ(ବ) ଗୁପ୍ତ, ଲଳିତ ବସନ୍ତ, ଶଙ୍କର, ଶଙ୍କର-କାମୋଦୀ, ଶଙ୍କର କେଦାର, ଶଙ୍କର ମୁଖାରୀ, ଶଙ୍କରାଭରଣ, ଶାବର ଗୁଜ୍ଜରୀ, ସାନ କନଡ଼ା, ସିନ୍ଧୁ କାମୋଦୀ ସିନ୍ଧୁଡ଼ା' ।

(ଶ୍ରୀମତୀ ପ୍ରମିଳା ମିଶ୍ରଙ୍କ ସଂପାଦିତ ସୂଚିତ ରାମାୟଣରୁ ଗୃହୀତ)

କବି ଯେଉଁ ରାଗଗୁଡ଼ିକର ତାଳ ନିର୍ଦ୍ଦେଶ କରିଛନ୍ତି ସେଗୁଡ଼ିକ ହେଉଛି—

"କାଫୀ (ଏକତାଳୀ), ତୋଡ଼ି (ତାଳ ଚିହପଟ), କାମୋଦୀ (ପଡ଼-ତାଳ), ଧନାଶ୍ରୀ (ଅଡ଼ତାଳ), ଗୁଜ୍ଜରୀ (ଖେମଟା), କେଦାର (ଦ୍ରୁତପଡ଼ତାଳ) କେଦାର (ତାଳଝୁଂପା) ଭୈରବ (ସରିମାନ) ପାଳୀ (ଝପା ଆଠତାଳୀ), କାମୋଦୀ (ବଡ଼ଝୁଂପା), ଗୌରୀ (ତ୍ରିପୁଟା), ପାଳୀ (ମାଠ ପଡ଼ତାଳ), ମହ୍ଲାର (ନିଃସାର) ।

ଏହା ବ୍ୟତୀତ କବି ବନମାଳୀ 'ଦୀନଜନ ବନ୍ଧୁ ବୃତ୍ତେ, ଗଉଡ଼ ନାଟ ବୃତ୍ତେ, ଡୋଳାବିହାର କମଳ ବୃତ୍ତେ, କଂସ କଟକରେ କମଳଲୋଚନ ବୃତ୍ତେ, ଆସୁଥିଲୁ ସୁନ୍ଦରୀ ସୁନ୍ଦର କରି ଷିଡିକ ବୃତ୍ତେ, ଆହା ମୋତେ ପଡ଼ିଅଛି କ ଦୁର୍ଦ୍ଦଶା ବୃତ୍ତେ, ଚକ୍ରବାକ ଦଶାହେଉ ବୃତ୍ତେ, ସ୍ନାନ ଯାତ୍ରା ଚଉତିଶା ବୃତ୍ତେ, ଯମୁନାଘାଟରେ ବେଣୁପାଣି ବୃତ୍ତେ, ସେ ଗୋ ନନ୍ଦନନ୍ଦନ ବୃତ୍ତେ, ବନ୍ଧୁମୋ କେଉଁ ଗଳିରେ ବୃତ୍ତେ, କଣ୍ଠ ପରିଜନେ କି କେମାନରେ ବୃତ୍ତେ, ମଦନ ଦେଉଛି ଏ ମହା ବେଦନା ବୃତ୍ତେ, ରସସିନ୍ଧୁ ବନ୍ଧୁ ଧନକୁ ଛାଡ଼ି ଅଇଲି ବୃତ୍ତେ, ପ୍ରାଣନାଥ ହେ, ମେଲ୍ଲଣି ଯେ ମାଗ ବୃତ୍ତେ" ପ୍ରଭୃତିର ବ୍ୟବହାର କରି ନିଜ ଗୀତ ଗୁଡ଼ିକୁ ସୁଗେୟ କରିବା ଲାଗି ଚେଷ୍ଟା କରିଛନ୍ତି ।

ରାମଚମ୍ପୂ ଗୀତରେ ବିଭିନ୍ନ ରାଗ, ତାଳ ଓ ବୃତ୍ତ ବ୍ୟତୀତ କେତେକ 'ବାଣୀ'ର ପ୍ରୟୋଗ ରହିଛି । ସେପରି ସ୍ଥଳରେ କବି ଆଦୌ ରାଗ ଓ ତାଳର ଉଲ୍ଲେଖ କରି ନାହାନ୍ତି । କବି ବନମାଳୀଙ୍କ ପୂର୍ବରୁ ଯେଉଁ କବିତା ଗୁଡ଼ିକ ଅତ୍ୟନ୍ତ ଲୋକପ୍ରିୟତା ଅର୍ଜନ କରି ଜନମୁଖରେ ଗୀତ ହେଉଥିଲା, ସେଗୁଡ଼ିକୁ କବି ବନମାଳୀ 'ବାଣୀ' ଅର୍ଥାତ୍ ସେହି କବିତା ଅନୁସାରେ ଗାନ କରିବାଲାଗି ନିର୍ଦ୍ଦେଶ ଦେଇଛନ୍ତି । ସେଗୁଡ଼ିକ ମଧ୍ୟରେ ଆଷାଢ଼ ଶୁକ୍ଳବାଣୀ, କଳସା ବାଣୀ, ଆଦ୍ୟମଗୁଣିର ବାଣୀ ପ୍ରଭୃତି ପ୍ରଧାନ ।

କବି ବନମାଳୀଙ୍କ ପୂର୍ବରୁ କୃଷ୍ଣ ଦାସ ବଡ଼ଜେନା ମହାପାତ୍ର 'ଗୀତ ପ୍ରକାଶ' ଶୀର୍ଷକ ସଙ୍ଗୀତ ଗ୍ରନ୍ଥ ଲେଖିବା ସଙ୍ଗେ ସଙ୍ଗେ 'ରସକଲ୍ଲୋଳ' ପ୍ରଭୃତି ଲୋକପ୍ରିୟ ଗୀତ କବିତା ଲେଖି ପ୍ରସିଦ୍ଧି ଅର୍ଜନ କରିଥିଲେ । କବିଚନ୍ଦ୍ର କୃଷ୍ଣଦାସଙ୍କ ଗୀତ ଥାଉଁ ଥାଉଁ କାଳେ ଲୋକମାନେ ତାଙ୍କ ରଚିତ 'ରାମଚମ୍ପୂ'କୁ ଆଦର କରିବାରେ କୁଣ୍ଠାବୋଧ କରିବେ, ସେଥିଲାଗି ସେ ଅତି ବିନୀତ ଭାବରେ କହିଛନ୍ତି—

"କୃଷ୍ଣଦାସ କବିଚନ୍ଦ୍ର ଗୁଣମଣି ଗୀତ ।
ଥାଉଁ ଥାଉଁ ଏଥି ନ ରସିବ ତୁମ୍ଭ ଚିତ୍ତ ହେ ॥
ଏହି ସେନି ମାଗୁଅଛି ଶୁଣ ହେ ସୁହୃଦେ ।
ଦେଖିବ ଏ ଗୀତ ଚିତ୍ତ ଥିଲେ ରାମ ପଦେ ହେ ॥

× × ×

ଯଦ୍ୟପି ମୋ ଭାଷା କର୍ଣ୍ଣ ରସାୟକ ନୁହେଁ ।
ରଘୁପତି କୀର୍ତ୍ତି-ଚିତ୍ତ ଯେଣୁ ଏଥି ରହେ ହେ ॥
ଏ ସେନି ଶ୍ରବଣ ଯୋଗ୍ୟ ଆହେ ଧୀରବର ।
ସାଧୁମାନେ ରାମକଥା-ମହାଧନ ଚୋର ହେ ॥
ଗଢ଼ିଛି ଏ ଚଉପଦୀ ରତ୍ନମାଳା ମୁହିଁ ।
କଣ୍ଠତଟେ ମଣ୍ଡି ରସିକେ ନିଃଶଙ୍କ ହୋଇ ହେ" ॥

କବି ବନମାଳୀ ଦାସ ଭୋଜରାଜଙ୍କ 'ରାମାୟଣ ଚମ୍ପୂ'ର ଅନୁବାଦ କରିଥିଲେ ହେଁ ଓଡ଼ିଆ ଭାଷା ଓ ପଦରଚନାର ଶୈଳୀରେ ସମ୍ପୂର୍ଣ୍ଣ

ସ୍ୱାତନ୍ତ୍ର୍ୟ ରକ୍ଷା କରିଛନ୍ତି । ତାହାର ଫଳରେ କବି ବନମାଳୀଙ୍କ ରଚନାର ମାଧୁର୍ଯ୍ୟ, କେତେକ ସ୍ଥଳରେ ଉପେନ୍ଦ୍ରଭଞ୍ଜଙ୍କ ବୈଶିଷ୍ଟ୍ୟ ଅପେକ୍ଷା ଅଧିକ ହୃଦୟ ଗ୍ରାହୀ ହୋଇ ଉଠିଛି । ବିଶେଷତଃ ପ୍ରାକୃତିକ ଦୃଶ୍ୟାବଳୀ ବର୍ଣ୍ଣନା ତଥା ଶ୍ରୀରାମଚନ୍ଦ୍ରଙ୍କ ବିରହ ବର୍ଣ୍ଣନା ପ୍ରଭୃତି କ୍ଷେତ୍ରରେ ବନମାଳୀଙ୍କ ରଚନା ରସାନୁକୂଳ ହେବା ସଙ୍ଗେ ସଙ୍ଗେ ଭକ୍ତ ଜନତା ଓ ରସାମୋଦୀ ପାଠକ-ମାନଙ୍କ ପକ୍ଷରେ ପ୍ରାଣସ୍ପର୍ଶୀ ହୋଇ ପାରିଛି ।

"କ୍ଷମାକ୍ଷେମା ରମା କର କ୍ଷମା ଦୋଷକୁ ।
ବାମ ନୋହିବ ବାମା ଦେଖା କାଣ ହାସକୁ ॥
ଶ୍ୟାମା ଦେଖା ନ ଦେଇ,
ଭ୍ରମାଉଛ କିଂପାଇଁ,
ହେମାଙ୍ଗି ନାଶୁ ନିଜ ଦାସକୁରେ ॥
ପ୍ରେମାସ୍ପଦ ଲୋକରେ,
ବିମାନ୍ତି ଦୁଃଖ ଶରେ ।
ନମାନୁ କାହିଁକି ମୋ ଭାଷକୁରେ ॥
ସୀମାକୁ ନ କରାଇ,
ନାମାନ୍ତ ଯଶ ନାହିଁ ।
ତମାଳକେଶୀ ନାଶ ରୋଷକୁ ରେ ॥
ଯାମାର୍ଦ୍ଧ ଯୁଗ ପରି,
ଅମାଚନ୍ଦ୍ର ଶର୍ବରୀ ।
ହିମାଦ୍ରି ସ୍ତନା ଆସ ପାଶକୁ ରେ ॥
ଉମାନାୟକ ଅରି,
ଶ୍ରମାଶ୍ରିତି ନାଗରୀ ।
ପ୍ରମାଣ ହରି କହେ ରସକୁ ରେ" ॥

|(ସୁଚିତ୍ର ରାମାୟଣ—ଅରଣ୍ୟକାଣ୍ଡ)

× × ×

ହୋଇଲା ହେମ ସମସ୍ତ ସୁରକୁ କଲା ନିର୍ଭୟ,
ଶସ୍ୟପାତ ହେମମସ୍ତ ଦିଶିଲା କେଦାରଚୟ,

କନ୍ଦର୍ପରଣେ ବଜମୁ ବୀର ପାଣି ଅଶ୍ୱାସୁ,
ପଲ୍ଲବ ପାଦେ ସଞ୍ଚସୁ ପରାସୁ ହେଲ ନଷ୍ଟମୁ ହେ,
ଚନ୍ଦ୍ରକର,
ଅସୁଖ ମଣିଲେ ସର୍ବ ନର ହେ !
ଚନ୍ଦନଠାରେ ଆଦର ଦୂର ଚନ୍ଦ୍ରଶାଳା ତ୍ର
ହେଲ ଭୟଙ୍କର ହେ" ॥

(ଅରଣ୍ୟ କାଣ୍ଡ)

× × ×

ଘନରବୁ ଭଙ୍ଗରେ ପରବେଶ ରାଜ ଅନଙ୍ଗ ।
କେକୀ ମଣ୍ଡଳୀ ଧାଏ କାହାଳୀ ହାଜି ବାଜି କୁରଙ୍ଗ ॥
ଇନ୍ଦ୍ରସ୍ୱପ ପତାକା ରାଜତ,
ପଟହସ୍ୱନ୍ତ ବାଏ ଜୀମୂତ ।
ଖଡ୍ଗ ତଡ଼ିତ ନଚ୍ଚଏ ଅବିରତ,
ଅଗ୍ରେ ଗଗନ ମାତଙ୍ଗ ॥
ଛୁଟିତ ବଜ୍ର କମାଣ ନିସ୍ଫୁର,
ବର୍ଷେ ବିଶିଖ ଆସାର ପରଖର ।
ଡାକେ ସ୍ତୁତକ ଡାକ ଖରତର,
ଦେବଧାସୁକ ଝଙ୍ଗ ।
ଫୁଲ୍ଲ କଦମ୍ବ କଦମ୍ବକୋରକ,
ରଙ୍ଗସରସିଜ ତୀକ୍ଷ୍ଣଶାୟକ ।
ବାରୁଦ ସମ୍ପୁଟ ବହଇ କେତକ
ରଙ୍ଗେ ଚର୍କଶ ଭୃଙ୍ଗ" ।

(କିଷ୍କିନ୍ଧା କାଣ୍ଡ)

× × ×

ଧରମ ବଂଶେ କଳଙ୍କ ହୋଇବ ।
ଶରମ ସଖୀ ମଇଣୁ ବଳବ !

ଧର ମନେ ଏ ବଚନର ସୁକେଶି !
ହର ମଦନ ଦୁଃଖ ମୋର ଆସି ।
କରମତେ ଅନୁଗ୍ରହରେ ।
ପରମ ଦାରୁଣ ଅଟେ ଫୁଲଧନୁ ପରମଦା ତେଜ ଗ୍ରହ ଗୋ !

ସହି ନ ପାରଇ ବିଷମ ଶର ।
ମହୀନନ୍ଦନା ମୋତେ କଲୁ ଦୂର ।
ରହି ନ ଦେଖଇ ତୋ ବିନୁ ଆନେ ।
ସହି ନ ହେଜଲୁ ଏତେକ ମନେ ଯେ,
କହି ନଥିଲୁ କିଂପାଇ ରେ !
ବହି ନ ଥାନ୍ତି ଏ ଦାରୁଣ ପରାଣ ଅହୀନଗରଳ ଖାଇ ରେ" ॥
(ଅରଣ୍ୟ କାଣ୍ଡ)

କବି ବନମାଳୀ ଖ୍ରୀ: ଅ: ୧୭୫୪ରେ ପୁସ୍ତକଟି ଶେଷ କରିଥିବାରୁ, ଏହାର ରଚନା ସମୟ ଖୁବ୍ ସମ୍ଭବତଃ ଖ୍ରୀ: ଅ: ୧୭୫୦-୫୧ ବୋଲି ଗ୍ରହଣ କରାଯାଇ ପାରେ ! କବିଙ୍କର ଏହା ପ୍ରାରମ୍ଭିକ ରଚନା ହୋଇଥିବାରୁ ଅନ୍ତତଃ ପଚିଶରୁ ତିରିଶ ବର୍ଷ ବୟସ ମଧ୍ୟରେ ବନମାଳୀ 'ରାମଚମ୍ପୂ' ଚଉପଦୀ ରଚନା କରିଥିଲେ । ତେଣୁ ବନମାଳୀ ଖ୍ରୀ. ଅ. ୧୭୨୦-୩୦ ମଧ୍ୟରେ ଜନ୍ମଗ୍ରହଣ କରିଥିବାର ଅନୁମାନ ଆଦୌ ଅସମୀଚୀନ ବୋଲି ମନେ ହୁଏ ନାହିଁ ।

କବି ବନମାଳୀ ଜୀବନର ପୂର୍ବାର୍ଦ୍ଧରେ ଗୃହୀ ଥିଲେ ଏବଂ ଖୁରୁଧା-ରାଜା ବୀର କେଶରୀ ଦେବଙ୍କ ସହିତ ତାଙ୍କର ସମ୍ପର୍କ ଥିଲା । ତେଣୁ ସେ ରାଜାଙ୍କ ନାମ ଶ୍ରଦ୍ଧାର ସହିତ କାଳନିର୍ଣ୍ଣୟ ସମୟରେ ଉଲ୍ଲେଖ କରିଛନ୍ତି । କବି ବନମାଳୀ ଯୁବାବସ୍ଥାରେ ସୁଚିତ୍ର ରାମାୟଣ ରଚନା କରିଥିବାରୁ, ସେଥିରେ ଆବଶ୍ୟକସ୍ଥଳେ ରସିକତା ପ୍ରକାଶ କରିବାକୁ ଭୁଲି ନାହାନ୍ତି । ଆହୁରି ମଧ୍ୟ ସ୍ଥଳ ବିଶେଷରେ ଶ୍ରୀରାମଙ୍କ ବିରହ ବର୍ଣ୍ଣନା କରିବାରେ ବେଶ୍ ସିଦ୍ଧହସ୍ତତା ଦେଖାଇଛନ୍ତି । କବି ବନମାଳୀଙ୍କ 'ସୁଚିତ୍ର ରାମାୟଣ'ର ଚଉପଦୀ ଗୁଡ଼ିକରେ ଆଙ୍ଗିକ ସୌଷ୍ଠବ ତୁଳନାରେ ଆତ୍ମିକ ସୌଷ୍ଠବ

ଅପେକ୍ଷାକୃତ ଊଣା ବୋଲି କହିଲେ ଅପ୍ରସ୍ତୁତ ନିନ୍ଦା ହେବ ନାହିଁ । ବରଂ ତାହା ରୀତିଯୁଗର ପରଂପରା ଏବଂ ଅର୍ଜୁନ ଦାସଙ୍କ ଠାରୁ ଆରମ୍ଭକରି କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କ ପର୍ଯ୍ୟନ୍ତ ଚଳି ଆସିଥିବା ଅଳଙ୍କାର ଶାସ୍ତ୍ର-ସମ୍ମତ ରଚନାର ପକ୍ଷପାତୀ ବୋଲି କହିଲେ ସମୀଚୀନ ହେବ । କବି ଗୃହସ୍ଥାଶ୍ରମରେ ରହି, ଲକ୍ଷ୍ମଣ ଚଳଛୋଙ୍କ ଠାରୁ ସଙ୍ଗୀତବିଦ୍ୟାରେ ଧୁରୀଣ ହେବା ସଙ୍ଗେ ସଙ୍ଗେ କବି ପ୍ରତିଭାରେ ବିଭୂଷିତ ହୋଇଥିଲେ । ତେଣୁ ସେହି ସମୟରେ ତାଙ୍କ କବିତାରେ ରୀତି ଯୁଗର ଆଙ୍ଗିକ ସମ୍ଭାର—ରୀତି, ଗୁଣ, ଅଳଙ୍କାର ଭରପୂର ହୋଇ ରହିବା ଆଦୌ ବିଚିତ୍ର ନୁହେଁ । ବିଶେଷତଃ ଉପେନ୍ଦ୍ର ଭଞ୍ଜଙ୍କ ପରି ଜଣେ ନିପୁଣ ଶିଳ୍ପୀଙ୍କ ରଚନା ତାଙ୍କର ଆଦର୍ଶ ହୋଇଥିବାରୁ ସେ କଠିନ ଶବ୍ଦ ; ଉପମା, ଉତ୍ପ୍ରେକ୍ଷା, ବିରୋଧା-ଭାସ ଆଦି ଅଳଙ୍କାର ; ସଂସ୍କୃତ ରୀତିରେ ଋତୁ ବର୍ଣ୍ଣନା, ବିରହ ବର୍ଣ୍ଣନା, ଚନ୍ଦ୍ରୋଦୟ ତଥା ପ୍ରାତଃ ଓ ସନ୍ଧ୍ୟାଦି ବର୍ଣ୍ଣନା କରିବାରେ ରୀତି ଯୁଗୀୟ କବିଙ୍କ ଠାରୁ କୌଣସି ଗୁଣରେ ଆଦୌ ଊଣା ନୁହନ୍ତି । କିନ୍ତୁ କବି ବନମାଳୀ କବିଚନ୍ଦ୍ର କୃଷ୍ଣଦାସଙ୍କ କବିତାର ଲୋକପ୍ରିୟତା ତୁଳନାରେ ନିଜ କବିତାର ଲୋକପ୍ରିୟତାରେ ସନ୍ଦିଗ୍‌ଧମନା ହୋଇ, ସୀତାରାମଙ୍କ ଅନ୍ତରାଳରେ ରହି 'ରାମଚମ୍ପୂ'କୁ ଆଦରରେ ପାଠ କରିବା ଲାଗି ସହୃଦୟ ପାଠକମାନଙ୍କୁ ବିନୀତ ଅନୁରୋଧ ଜଣାଇଛନ୍ତି । ଏହି ପରିପ୍ରେକ୍ଷୀରେ ବିଚାର କଲେ, ବେଶ୍ ଜଣାଯାଏ ଯେ ଭକ୍ତକବି ବନମାଳୀ ପୂର୍ବାଶ୍ରମରେ ଥିବା ସମୟରେ 'ସୁଚିତ୍ର ରାମାୟଣ' ନାମରେ ଭୋଜରାଜଙ୍କ ଚମ୍ପୂ ଟିକୁ ଅନୁବାଦ କରିଥିଲେ ।

କବି ବନମାଳୀଙ୍କ ନାମରେ ଭଣିତ ଶ୍ରୀରାଧାକୃଷ୍ଣ ଲୀଳାମୃତ ତଥା ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଠାରେ ଜଣାଣ ମୂଳକ ବହୁ କବିତା (ପଦ୍ୟାବଳୀ)ରେ ତାଙ୍କର ଧର୍ମମତ, ଅବସ୍ଥା ତଥା ପଦ୍ୟାବଳୀର ଆତ୍ମିକ ସୌନ୍ଦର୍ଯ୍ୟର ଯେଉଁ ପରିଚୟ ମିଳୁଛି, ତାହାହିଁ ତାଙ୍କୁ ଜନମାନସରେ ଚିରଦିନ ଲାଗି ସଜୀବ କରି ରଖି ପାରିଛି ।

ସୁଚିତ୍ର ରାମାୟଣରେ କବି ବନମାଳୀ ଓ 'ପଦ୍ୟାବଳୀ'ର ପ୍ରଣେତା ବନମାଳୀଙ୍କୁ ଦୁଇଜଣ ବ୍ୟକ୍ତିରୂପେ କେତେକ ଆଲୋଚକ ମତ ଦିଅନ୍ତି ।

କିନ୍ତୁ ରାଜା ବୀରକେଶରୀ ଦେବଙ୍କ ସମୟରେ ପୁରୀରେ ରହି ଶ୍ରୀଜଗନ୍ନାଥଙ୍କ ସେବାରେ ଆତ୍ମନିୟୋଗ କରିଥିବା ଦୁଇଜଣ ଏକ ନାମଧାରୀ ବନମାଳୀ ଥିବାର କୌଣସି ପ୍ରମାଣ ନାହିଁ । ଏକ ସମୟରେ ଏକ ନାମଧାରୀ ତଥା ସମଗୁଣ ଓ ପ୍ରତିଭା ବିଶିଷ୍ଟ ଦୁଇଜଣ ବନମାଳୀ ଥିବାର ଚିନ୍ତା ସେପରି ଯୁକ୍ତି ଯୁକ୍ତ ବୋଲି ମନେ ହୁଏ ନାହିଁ । ବରଂ ଦୋଳମଣ୍ଡପ ସାହିର କରଣ ପରିବାରରେ ଜନ୍ମ ଗ୍ରହଣ କରି ବନମାଳୀ ପୂର୍ବାଶ୍ରମ ତଥା ସନ୍ୟାସ ଥିବା ସମୟରେ ରାଜା ବୀରକେଶରୀ ଦେବଙ୍କ କୃପାଭାଜନ ହୋଇଥିବାରୁ, ତାଙ୍କ ନାମ ଶ୍ରଦ୍ଧାର ସହିତ 'ସୁଚିତ୍ର ରାମାୟଣ'ରେ ଉଲ୍ଲେଖ କରିବା ସଙ୍ଗେ-ସଙ୍ଗେ ସନ୍ୟାସ ଜୀବନରେ ତାଙ୍କ ନାମରେ କେତୋଟି କବିତା ଭଣିତା କରିଥିବାର ମତ ଦିଆଯିବା ଅଧିକ ଯୁକ୍ତି ସଙ୍ଗତ ବୋଲି ମନେ ହୁଏ ।

ପୂର୍ବୋକ୍ତ ଆଲୋଚନାରୁ ଏତିକି ଧାରଣା କରି ହୁଏ ଯେ ମଧ୍ୟଯୁଗର ପ୍ରସିଦ୍ଧ ଗୀତି କବି ବନମାଳୀ ଦାସ ଶ୍ରୀପୁରୁଷୋତ୍ତମ ଧାମର ଦୋଳମଣ୍ଡପ ସାହିରେ ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ତୃତୀୟ ଦଶକରେ ଏକ କରଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର କୌଳିକ ପଦବୀ ଥିଲା— ପଟ୍ଟନାୟକ, 'ସୁଚିତ୍ର ରାମାୟଣ'ରେ ସେ ନିଜ ନାମ ବନମାଳୀ ବ୍ୟତୀତ ଅନ୍ୟ କୌଣସି କୌଳିକ ପଦବୀ ବ୍ୟବହାର କରି ନାହାନ୍ତି । କିନ୍ତୁ ତାଙ୍କ ରଚିତ 'ପଦ୍ୟାବଳୀ'ରେ 'ବନମାଳୀ', 'ଦୀନ ବନମାଳୀ', 'ବନମାଳୀ ଦାସ' ଓ'ବନମାଳୀ ପଟ୍ଟନାୟକ' ବୋଲି ଭଣିତା ହୋଇଛି । କବି ତାଙ୍କର ଅଧିକାଂଶ ପଦ୍ୟରେ କେବଳ 'କହେ ବନମାଳୀ', ବୋଲେ ବନମାଳୀ ପ୍ରଭୃତି ଲେଖିଥିବା ବେଳେ ଅଳ୍ପ କେତୋଟି ପଦ୍ୟରେ 'ଦୀନ ବନମାଳୀ' ବୋଲି ଉଲ୍ଲେଖ କରିଛନ୍ତି । ତଦ୍‌ବ୍ୟତୀତ ଆଉକେତୋଟି ପଦ୍ୟରେ 'ଦାସ ବନମାଳୀ', 'ବନମାଳୀ ଦାସ' ବୋଲି ଉଲ୍ଲେଖ କରିଛନ୍ତି । କିନ୍ତୁ "କି ଦେଖିଲି ଆଜ ନେତ୍ର" ଶୀର୍ଷକ ପଦ୍ୟରେ 'ପଟ୍ଟନାୟକ' ପଦବୀର ସୂଚନା ମିଳୁଛି ।

"କହେ ବନମାଳୀ ଶଙ୍ଖରେ ପୂରିଲି ଚିତ୍ତ ଯୋଡ଼ାଇଣ ରଖ ।

× × ×

ବୋଲେ ବନମାଳୀ ଏହା ନୁହେଁ ଅଚମ୍ଭିତ ॥

× × ×

ରସେ ବନମାଳୀ ବଦନ୍ତି କଣୋଗଙ୍କି ବୋଲନ୍ତି ଦୂତୀ ।
ବନମାଳୀ ବଦନ୍ତି ଶୁଣି ବୋଲେ ସେ ଦୂତୀ
ନବେଣି ତା ଭାବନା ସିନ୍ଧୁକୁ ॥

× × ×

ଦାସ ବନମାଳୀ ଭଣେ ତୁମ୍ଭପରି ନାହିଁ ଜଣେ
ହଟିଆ ନଟ କୁଟିଆ ହେ ଚତୁରେଶ୍ୱର ॥

× × ×

ଅକାଳଆ ଦାସ—ବନମାଳୀ ପାସ
ଛଡ଼ା ହେଲେ ଏକକ୍ଷଣ ।

× × ×

ଦୀନ ବନମାଳୀ କହେ ଯାହାର ଦେହେ,
ଅନୁରାଗ ପିଶାଚ ରହେ ଆନ ଆନନ ନ ଚାହେଁ ॥

× × ×

ବୃନ୍ଦାବନ ଯୋଗାଇଲେ ମଧୁପାନ ବଢ଼ିଆ ।
ଦୀନ ବନମାଳୀ ସେବା ଚରଣ ଧୂଆ ସେ" ॥

ଏହି ଭଣିତା ଗୁଡ଼ିକରୁ ବନମାଳୀଙ୍କର ଦାସ୍ୟଭାବର ସୂଚନା ମିଳୁଛି । ସେ ବିଭୂପଦ୍ମରେ ନିଜକୁ ସମର୍ପଣ କରି ଦେଇ 'ତାଙ୍କର' ଗୁଣଗାନ କରିବା ଉଦ୍ଦେଶ୍ୟରେ ପଦ୍ୟଗୁଡ଼ିକୁ ରଚନା କରିଛନ୍ତି । କିନ୍ତୁ 'ପଞ୍ଚନାୟକ' ଭଣିତା ଥିବା ପଦ୍ୟଟି ବନମାଳୀଙ୍କ ପୂର୍ବାଶ୍ରମର ରଚନା ବୋଲି ମନେହୁଏ । ବିଶେଷତଃ ଅନୁରାଗିଣୀ ଶ୍ରୀରାଧା ସଖୀ ପ୍ରତି ଶ୍ରୀକୃଷ୍ଣଙ୍କ ଅଙ୍ଗବର୍ଣ୍ଣନାର ପରିପାଟୀ ପ୍ରକରଣରେ କବି ବନମାଳୀ ଯେପରି ଭାବରେ ଉଲ୍ଲେଖ କରିଛନ୍ତି, ସେଥିରୁ ବେଶ୍ ଧାରଣା କରିହୁଏ ଯେ, କବି ଭକ୍ତି-ଭାବରେ ବିହ୍ୱଳ ହୋଇ ଶ୍ରୀରାଧାଙ୍କ ବିପ୍ରଲମ୍ଭ କାଳୀନ ପୂର୍ବରାଗ ବର୍ଣ୍ଣନା କରିବା ଅପେକ୍ଷା, ରୀତି କାଳୀନ କବିମାନଙ୍କ ପରି ଶିରରୁ କଟୀ ପର୍ଯ୍ୟନ୍ତ ଶ୍ରୀକୃଷ୍ଣଙ୍କ ନଟବର ବେଶର ଉଲ୍ଲେଖ କରି ଭଣିତାରେ ବୋଲି

"ବନମାଳୀ ସେ ପଟ୍ଟନାୟକ" ବୋଲି ନିଜ ପଦବୀ ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଛନ୍ତି । ଆଲୋଚନା ଦୃଷ୍ଟିରୁ ପଦ୍ୟଟି ଏଠାରେ ଉଲ୍ଲେଖ କରାଗଲା—

"କି ଦେଖିଲି ଆଜ ନେତ୍ର ଲୋ ସଜନି,
କି ଦେଖିଲି ଆଜ ନେତ୍ର ।
ଲଳିତ ମୂରତି କଳିତ ନୋହିଲି
ଦଳିତ ଅଞ୍ଜନ ଗାତ୍ର ଲୋ ॥
ଅଳକା କପୋଳେ ଚପଳା କି ଖେଳେ,
କେକିପୁଚ୍ଛ ଚନ୍ଦ୍ରଚୂଳ ।
ରତନେ ଜଡ଼ିତ ଯତନେ କୁଣ୍ଡଳ
ଝଲକେ ଗଣ୍ଡମଣ୍ଡଳ ଲୋ ॥
ହୃଦରେ ପଦକ କରଇ ମାଦକ
ବାଦକରେ ନିଶାକରେ ।
କାମିନୀଚିତ୍ତ କୁମୁଦ ପ୍ରଫୁଲ୍ଲିତ
କରୁଥାଇ ଲୋକନରେ ଲୋ ॥
କରେଚା କଂକଣ ମୁରଲୀ ବାଦନ
ପଦ୍ମରେ ନୂପୁର ଶୋହେ ।
ସୁବାସ କୁସୁମ ମାଳ ମାନ ବାର-ବେନି—
ପୁର ମୋହେ ଲୋ ॥
ବାନ୍ଧୁ ପିନ୍ଧିବାର କାଚ୍ଛୁ ପୀତାମ୍ବର
ଅତର କର୍ପୂର ଉଚ୍ଛୁ ।
ବାଞ୍ଛିବାକୁ ଆଉ ଅଛୁ କି ସେ ଶ୍ୟାମ
ସୁନ୍ଦରପଣକୁ କଛୁ ଲୋ ॥
ବୋଲେ **ବନମାଳୀ ସେ ପଟ୍ଟନାୟକ**
ଭାଷନ୍ତ କଣୋଶାମଣି ।
ନଟଲଗାଇବା ହଟ ବଡ଼ ତାର
ନଟବର ବେଶ ଠାଣି ଲୋ" ॥

ଆଲୋଚକ ଶ୍ରୀ ଫକୀର ଚରଣ ଦାସ, 'ବନମାଳୀ ପଦ୍ୟାବଳୀ' ର ମୁଖବନ୍ଧରେ କବି ବନମାଳୀଙ୍କ ସାକ୍ଷାଗ୍ରହଣର ପରବର୍ତ୍ତୀ ନାମ 'ବଲ୍ଲଭାନନ୍ଦ' ଥିବାର ଆଲୋଚନା କରୁଛନ୍ତି । ତେଣୁ ତାଙ୍କ ରଚନା 'ତୋ ଲାଗି ଗୋପଦାଣ୍ଡମନା' ପଦ୍ୟରେ ନିଜ ନାମ ବଲ୍ଲଭାନନ୍ଦ ବୋଲି ଭଣିତା କରିଛନ୍ତି ।

" କହଇ ବଲ୍ଲଭାନନ୍ଦ ଏ ରସରେ
ଶୁଣ ଆଗୋ ସଖୀ ବୃନ୍ଦ ।
ଯମୁନା କୂଳରେ ମୁରଲୀ ବଜାଏ
ତୁମ୍ଭ ହେନ କୃଷ୍ଣଚନ୍ଦ୍ର ରେ" ।

ଉଭୟ ଆଲୋଚକ ଶ୍ରୀ ଦାସ ଓ ଡକ୍ଟର ଚୟନୀ ଏହି ମତକୁ ସ୍ୱୀକାର କରିଛନ୍ତି । ସେ ବନମାଳୀ ନାମ ଭଣିତାରେ ପୂର୍ବାଶ୍ରମରେ ପଦ୍ୟରଚନା କରୁଥିବାରୁ, ଆଉ ସେହି ନାମଟିକୁ ପରିବର୍ତ୍ତନ କରି ନାହାନ୍ତି । କାରଣ ଭକ୍ତ ଜନତା ତଥା ସାଧାରଣ ପାଠକ ପାଠିକାଙ୍କ ମହଲରେ ତାଙ୍କ ନାମ ବନମାଳୀ ବୋଲି ପ୍ରସିଦ୍ଧି ଲାଭ କରିଥିଲା । ଏପରି ହେବା ଆଦୌ ଅସ୍ୱାଭାବିକ ନୁହେଁ । କିନ୍ତୁ ଓଡ଼ିଆ ସାହିତ୍ୟ-ଜଗତରେ ବଲ୍ଲଭାନନ୍ଦ, ବଲ୍ଲଭଦାସ ନାମରେ ଭଣିତା ଥିବା ଅନେକ ଭକ୍ତିଭାବାତ୍ମକ ପଦ୍ୟ ଥିବାର ପରିଲକ୍ଷିତ ହୁଏ ।

ମାଧବ ଦୀନବାନ୍ଧବ କୃଷ୍ଣ କେଶବ ଦଇତାରି ।
ଶ୍ରୀ ମୁକୁନ୍ଦ ଆନନ୍ଦକନ୍ଦ ଗୋବିନ୍ଦ ଗିରିଧାରୀ ॥
ନାରାୟଣ ବାସୁଦେବ ପୁରୁଷୋତ୍ତମ ପଦ୍ମନାଭ ।
ଦାମୋଦର ଶ୍ୟାମ ସୁନ୍ଦର ଶ୍ରୀକର ଚକ୍ରଧାରୀ ॥

× × ×

ଗୋପୀଜନ ଲୋକେଶ,
ଚରଣେ ଶରଣ **ବଲ୍ଲଭ ଦାସ** ॥
( ଓଡ଼ିଆ ଭଜନ, ପ୍ରଥମଭାଗ
ରାଜ୍ୟ ସାଂସ୍କୃତିକ ବ୍ୟାପାର
ବିଭାଗ ଦ୍ୱାରା ପ୍ରକାଶିତ )

ହୋଇଲେ ଶରଣ ହୋଇବୁ କାରଣ
ରଖିଛୁ ବନେ ଯେ ଗଜ ରେ ।
ବୋଲଇ **ବଲ୍ଲଭ** ଚରଣ ପଙ୍କଜ ତଳେ
ହେବ ଦେବରାଜ ରେ' ॥

ଏହାବ୍ୟତୀତ 'ନାମଭଜନ' ଶୀର୍ଷକ ଗ୍ରନ୍ଥର ପ୍ରଣେତା ଓ ଅନ୍ୟାନ୍ୟ କେତୋଟି ଭଜନର ପ୍ରଣେତା ରୂପେ ବଲ୍ଲଭଦାସଙ୍କ ନାମ ଥିବାର ଦେଖାଯାଏ । ତେଣୁ ଏହି ପଦ୍ୟ ଗୁଡ଼ିକ ବନମାଳୀ ଦାସଙ୍କ ସାକ୍ଷାତ୍‌ଶିଷ୍ୟ ପରବର୍ତ୍ତୀ ନାମ ବଲ୍ଲଭାନନ୍ଦ ରଚନା କି ନୁହେଁ, ସେ ସମ୍ବନ୍ଧରେ ଆଲୋଚନା କରାଯାଇ ପାରେ ।

**ବନମାଳୀ ଦାସ** ପରିଣତ ବୟସରେ ବାଘେଳୀ ସାହି ଅନ୍ତର୍ଗତ 'ଖଜୁରିଆମଠ'ର ମହନ୍ତଙ୍କର ଅନ୍ତରଙ୍ଗ ବନ୍ଧୁ ଥିବାର ଆଲୋଚନା ଦେଖିବାକୁ ମିଳେ । କବି ବନମାଳୀ ତାଙ୍କର ପ୍ରଭାବରେ ସନ୍ନ୍ୟାସ ଗ୍ରହଣ କରିଥିବାର ଅନୁମାନ ମଧ୍ୟ କରାଯାଇ ପାରେ । କବି ବନମାଳୀ ବନ୍ଧୁଙ୍କର ପରିକଳ୍ପନା ଦେଖାଇ ତାଙ୍କ ନାମରେ ଗୋଟିଏ ପଦ୍ୟ ଭଣିତା କରିଥିବାର ସୂଚନା ମଧ୍ୟ ମିଳୁଛି । ଖଜୁରିଆମଠର ମହନ୍ତଙ୍କ ନାମ ଥିଲା–ଶ୍ରୀଚରଣ ଦାସ ଏବଂ ତାଙ୍କ ନାମରେ "ଗୃହ୍ନିଁ ଦେଲା କଞ୍ଚନରେ ବାରେ ସେ ଶ୍ୟାମନାଗର କୁ ଗୋ " ଭଣିତା କରିଥିବାର ସୂଚନା ଉଭୟ ଆଲୋଚକ ଶ୍ରୀ ଦାସ ଓ. ଡକ୍ଟର ଚୟନୀ ଉଲ୍ଲେଖ କରିଛନ୍ତି ।

"ଗୃହ୍ନିଁ ଦେଲା କଞ୍ଚନରେ,
ବାରେ ସେ ଶ୍ୟାମ ନାଗରଙ୍କୁ ଗୋ ।

\+ \+ \+

ବୋଲେ **ଶ୍ରୀ ଚରଣ ଦାସ** ଏହି ରସ,
ଯାହାର ସନ୍ତତ ବ୍ରଜରେ ନିବାସ,

ଶ୍ରୀ କୃଷ୍ଣ ଚରଣେ ଯାର ନିତ୍ତ ଆଶ,
ସେ ଲୀନ ହୁଏ ସେଠାରେ" ॥
( ବନମାଳୀ ପଦ୍ୟାବଳୀ, ଧର୍ମଗ୍ରନ୍ଥ ଷ୍ଟୋର ପୃ–୪୧)

ସନ୍ନ୍ୟାସ ଗ୍ରହଣ କରିବା ବେଳକୁ କବି ବନମାଳୀ ଦାସଙ୍କର ବୟସ ଅନ୍ତତଃ ପଚାଶ ହୋଇଥିବାର ଅନୁମାନ କରାଗଲେ, ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ଅଷ୍ଟମ ଦଶକ ବେଳକୁ କବି କୁଟୁମ୍ବଜଞ୍ଜାଳକୁ ଜଳାଞ୍ଜଳି ଦେଇ ବିଭୁପାଦରେ ନିଜକୁ ସମ୍ପୂର୍ଣ୍ଣ ଭାବରେ ଅର୍ପଣ କରିଥିବାର ଅନୁମାନ କରାଯାଏ ।

ପୂର୍ବ ଆଲୋଚନାରୁ ଜଣାପଡେ ଯେ, କବି ବନମାଳୀଦାସଙ୍କ ଘନିଷ୍ଠ ସମ୍ପର୍କ ବୀରକେଶରୀ ଦେବ ଗଜପତିଙ୍କ ସହିତ ଥିଲା । ତାଙ୍କ ଅନୁଗ୍ରହ ଲଭ କରି କବି କୃତାର୍ଥ ହେବା ସଙ୍ଗେ ସଙ୍ଗେ ତାଙ୍କ ନାମକୁ ଶ୍ରଦ୍ଧାର ସହିତ 'ସୁଚିନ୍ତାମଣିପୁରାଣ'ରେ ଉଲ୍ଲେଖ କରିଛନ୍ତି ।

ଆଲୋଚକ ତଥା ପ୍ରସିଦ୍ଧ ଐତିହାସିକ ଶ୍ରୀ କେଦାର ନାଥ ମହାପାତ୍ରଙ୍କ ଲିଖିତ 'ଖୁର୍ଦ୍ଧା ଇତିହାସ' ପୁସ୍ତକରୁ ଜଣାଯାଏ ଯେ, କବି ବନମାଳୀ ବାଇଶିଗୋଟି ପଦ୍ୟ ବୀରକେଶରୀ ଦେବଙ୍କ ନାମରେ ଭଣିତା କରି ବାଇଶିଗୋଟି ଜମିଜାଗିର ପାଇଥିଲେ । ପୂର୍ବକାଳରେ ରାଜା ମହାରାଜାଙ୍କ ନାମରେ ଗୀତ ଭଣିତା କରି କବିମାନେ ପୃଷ୍ଠପୋଷକଙ୍କ ସ୍ୱତନ୍ତ୍ର ଅନୁଗ୍ରହ ଲାଭ କରୁଥିବାର ଦୃଷ୍ଟାନ୍ତ ଭାରତୀୟ ସାହିତ୍ୟ ଜଗତରେ କମ୍ ଉଦାହରଣ ନାହିଁ । ଅବଶ୍ୟ କବି ବନମାଳୀ ବୀରକେଶରୀ ଦେବଙ୍କ ଠାରୁ ବାଇଶୀ ବାଟିଭୂମି ଦାନ ପାଇଥିବାର କୌଣସି ଅଭିଲେଖ ମିଳନାହିଁ । ତେଣୁ କିମ୍ବଦନ୍ତୀରୁ ଶୁଣି ଐତିହାସିକ ଶ୍ରୀଯୁକ୍ତ ମହାପାତ୍ର ଏ' ପ୍ରକାର ମନ୍ତବ୍ୟ ଦେଇଛନ୍ତି ।

ଖୁର୍ଦ୍ଧା ଭୋଇ ବଂଶର ଇତିହାସରୁ ଜଣାଯାଏ ଯେ ଗଜପତି ରାମଚନ୍ଦ୍ର ଦେବ ( ୨ୟ ) ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ୧୭୨୭–୧୭୩୬

ମଧ୍ୟରେ ଖୁର୍ଦ୍ଧା ସିଂହାସନ ଆରୋହଣ କରିଥିଲେ । ସେ ରାଜତ୍ୱର ପ୍ରାରମ୍ଭ କାଳରେ କଟକର ନାଏବନାଜମ୍ ସୁଜାଉଦ୍ଦୀନ, ମହମ୍ମଦ୍ ତକିଖାଁ ଓ ମୁର୍ଶିଦ କୁଲିଖାଁ ପ୍ରଭୃତି କଟକର ମୋଗଲ ଶାସକଙ୍କ ଦ୍ୱାରା ଅତ୍ୟାଚାରିତ ହୋଇଥିଲେ । ମୋଗଲ ଶାସକଙ୍କ ଚକ୍ରାନ୍ତରେ ସେ ଇସ୍‌ଲାମ ଧର୍ମ ଗ୍ରହଣ କରିଥିଲେ । ତା'ର ଫଳରେ ତାଙ୍କ ପୁତ୍ରମାନଙ୍କ ମଧ୍ୟରୁ ଭଗୀରଥି କୁମାର ଖୁର୍ଦ୍ଧା ସିଂହାସନର ପ୍ରକୃତ ଦାୟାଦ ରୂପେ ଦାବୀ କରି ନିଜ ବିଧର୍ମୀ ପିତା ରାଜା ରାମଚନ୍ଦ୍ର ଦେବଙ୍କ ବିରୁଦ୍ଧରେ ପରୋକ୍ଷରେ ଯୁଦ୍ଧଘୋଷଣା କରିଥିଲେ । ଏହି ଯୁଦ୍ଧରେ ତାଙ୍କୁ ଆଠଗଡ଼ (ଗଞ୍ଜାମ), ଅନୁଗୋଳ ପ୍ରଭୃତିର ରାଜାମାନେ ସାହାଯ୍ୟ କରିଥିଲେ । ସେହି ସମୟରେ କୁମାର ଭଗୀରଥି ଦେବ ବହୁ କଷ୍ଟ ସ୍ୱୀକାର କରି ବଣ, ଜଙ୍ଗଲରେ ଆଶ୍ରୟ ନେଇ ଉଭୟ ମୋଗଲ ସୁବେଦାର ଓ ନିଜ ପିତାଙ୍କ ପ୍ରତି ଆନୁଗତ୍ୟ ସ୍ୱୀକାର କରିଥିବା ଖୁର୍ଦ୍ଧା ପାଇକମାନଙ୍କ ବିରୁଦ୍ଧରେ ସୈନ୍ୟ ଚାଳନା କରିଥିଲେ । ବହୁ ପରିଶ୍ରମ ତଥା ତ୍ୟାଗ ସ୍ୱୀକାର ପରେ ସେ ଖୁର୍ଦ୍ଧା ସିଂହାସନରେ ଅଧିକାରୀ ହୋଇ ବୀରକେଶରୀ ଦେବ ନାମରେ ପରିଚିତ ହୋଇଥିଲେ ।

ବୀର କେଶରୀ ଜଣେ ସୁଶାସକ ତଥା କବି କୋବିଦଙ୍କ ପୃଷ୍ଠ ପୋଷକ ଥିବାର ଆଲୋଚନା ଐତିହାସିକ ଶ୍ରୀଯୁକ୍ତ କେଦାରନାଥ ମହାପାତ୍ର ତାଙ୍କ ଖୁର୍ଦ୍ଧା ଇତିହାସ'ରେ କରିଛନ୍ତି । କିନ୍ତୁ ଭଗୀରଥି ଦେବଙ୍କ ନାମରେ କେତୋଟି ଭଜନ ଓଡ଼ିଆ ସାହିତ୍ୟରେ ମିଳୁଥିବାରୁ ସେ ଗୁଡ଼ିକ ବୀର କେଶରୀ ଦେବ ରାଜାସିଂହାସନ ଲାଭ କରିବା ପୂର୍ବରୁ ରଚନା କରିଥିବାର ଅନୁମାନ କରାଯାଏ । ସେ ରାଜକୁମାର ଥିବା ସମୟରେ କବି ପ୍ରତିଭା ସମ୍ପନ୍ନ ହୋଇଥିବାରୁ କବି କୋବିଦଙ୍କ ପ୍ରତି ତାଙ୍କର ଐକାନ୍ତିକ ଶ୍ରଦ୍ଧା ଥିଲା । ରାଜା ହେବାପରେ ବୀର କେଶରୀ ଦେବ ବନମାଳୀ ଦାସ ପ୍ରଭୃତି ବହୁକବିଙ୍କ ପୃଷ୍ଠ ପୋଷକତା କରିଥିଲେ । ସେତିକି ବେଳେ ହୁଏତ ବନମାଳୀ ରାଜାଙ୍କ ପ୍ରତି ପୂର୍ଣ୍ଣ ଆନୁଗତ୍ୟ ଦେଖାଇ କେତୋଟି କବିତା ବୀରକେଶରୀ ଦେବଙ୍କ ନାମରେ ଭଣିତା କରିଥିବେ ।

ଆଲୋଚକ ପଣ୍ଡିତ ଶ୍ରୀଦାମଙ୍କ ଆଲୋଚନାରୁ ଜଣାଯାଏ ଯେ,

ବନମାଳୀ ଦାସ 'ନୀଳଗିରିନାଥ', 'ଶ୍ୟାମବନେ ହଜମ ଆଜ ବଞ୍ଚିବ କି', ନରସି ହୁଅନ୍ତୁ ସାବଧାନରେ, ମନବାଚ, ଛାଡ଼ ନ ପାରୁ ବିଷୟ ଗଞ୍ଜାଳ, ମନ ରେଧେ କୃଷ୍ଣ ଭଜରେ' ଓ 'ଭୁଜତଳେ ମୋତେ ରଖ' ପ୍ରଭୃତି ଛଅଟି ପଦ୍ୟ ରାଜା ବୀରକେଶରୀ ଦେବଙ୍କ ନାମରେ ଭଣିତା କରିଥିଲେ । କିନ୍ତୁ ଅନ୍ୟ ପାଞ୍ଚଟି ପଦ୍ୟ ସମ୍ବନ୍ଧରେ ବିଶେଷ ଆଲୋଚନାର ଅବକାଶ ନଥିଲେ ହେଁ, 'ଭୁଜତଳେ ମୋତେ ରଖ ମହାବାହୁ' କବିତାଟି ପାଠ କଲେ ତାହା ବୀରକେଶରୀ ଦେବ ମହାରାଜାଙ୍କ ନିଜ ରଚନା ନୁହେଁ ବୋଲି ଧାରଣା ହୁଏ ନାହିଁ । କବିତାଟି ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଉଦ୍ଦେଶ୍ୟରେ ଭକ୍ତର ଆର୍ତ୍ତି ନିବେଦନ ରୂପେ ଗୃହୀତ ।

"ଭୁଜତଳେ ମୋତେ ରଖ ମହାବାହୁ,
　　ବାହୁତଳେ ମୋତେ ରଖ ।
ବିପୁଳ ଭୁଜ ବିସ୍ତାରି ଦେଲେ ଥରେ,
　　କି କରି ପାରିବ ଦୁଃଖ ॥ ୧

ସଜ ହୋଇଥିବ ନନ୍ଦୀଘୋଷ ରଥେ,
　　ମୁଁ ଥିବି ତୁମ୍ଭ ସେବାରେ ।
ତୁମ୍ଭେ ଦୀନବନ୍ଧୁ ନିର୍ଦ୍ଦୟ ହୋଇଲେ,
　　କି ବୋଲିବେ ଏ ସଂସାରେ ॥ ୨

ଏ ଗଜବାଜ ସମ୍ପତ୍ତି କ୍ଷିତିପତି,
　　ରତିଏ ରୁଚଇ ନାହିଁ ।
ବୁଡ଼ି ଯାଉଅଛି ଏ ଭବସାଗରେ,
　　ରକ୍ଷା କର ଦେବରାୟ ॥ ୩

ଦିନକୁ ଦିନ ତ ଦୁଃଖ ବ୍ୟତିରେକେ,
　　ସୁଖତ ଦିଶଇ ନାହିଁ ।
ଭୁବନମୋହନ ଚକାନୟନଙ୍କୁ,
　　ଯେତେବେଳକୁ ଦେଖି ମୁହିଁ ॥ ୪

ମୁଁ ଅତି ପତିତ ଭରସା କରିଛି,
ପ୍ରଭୁ ଶ୍ରୀଚରଣତଳେ ।
ଶ୍ରୀ ବୀରକେଶରୀ ମହାରାଜା ଭଣେ,
ଦୟାକର ମୋତେ ବେଳେ ॥ ୫

(ବନମାଳୀ, ପଦ୍ମାବଳୀ ଧର୍ମଗ୍ରନ୍ଥ ଷ୍ଟୋର ଓ ବୁକ୍ସ ଆଣ୍ଡ ବୁକ୍ସ ଦ୍ୱାରା ପ୍ରକାଶିତ )

ରାଜ୍ୟ ସାଂସ୍କୃତିବ୍ୟାପାର ବିଭାଗ ଦ୍ୱାରା ପ୍ରକାଶିତ 'ଓଡ଼ିଆ ଭଜନ' ପ୍ରଥମ ଭାଗରେ ପ୍ରସ୍ତୁତ ଭଜନରେ ଆଉ ଦୁଇଟି ପଦ ରହିଛି । ଅବଶ୍ୟ ସେହି ଦୁଇଟି ଯାକ ପଦରୁ ଭଜନ ରଚନାର ସମସ୍ତ ତଥ୍ୟ କାରଣ ସମ୍ପର୍କରେ ସ୍ପଷ୍ଟ ସୂଚନା ମିଳିଥାଏ ।

"ଶ୍ରୀକ୍ଷେତ୍ର ନଗରେ ମହାଐଶ୍ୱର୍ଯ୍ୟରେ ଥିଲେ ହେଁ କମଳାସାଇଁ,
ବାଇଶି ପାବଛ ନ ଉଠିବା ଯାଏଁ ଆନନ୍ଦ ନ ପାଏ କାହିଁ ॥
ସେବାରୁ ଅନ୍ତର ହେଲା ଯେବେ ପ୍ରଭୁ ଏ ପ୍ରାଣ ଥିବ କାହିଁ ।
ଓହ୍ଲାଇ ନ ଦିଅ କଦା ମୋ ମଥାରୁ ଜଞ୍ଜାଳଭାର ଗୋସାଇଁ ॥"

ଏହି ଦୁଇପଦରୁ ସ୍ପଷ୍ଟ ସୂଚନା ମିଳେ ଯେ, ବୀରକେଶରୀ ଦେବ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ସେବାରୁ ବଞ୍ଚିତ ହୋଇ ନର୍ଯ୍ୟାତିତ ଜୀବନ ଯାପନ କରୁଥିବା ସମୟରେ ପ୍ରଭୁଙ୍କ ଶ୍ରୀପୟର ତଳେ ନିଜକୁ ସମର୍ପି ଦେଇ 'ପତିତ ପାବନ' ର ଆଶ୍ରୟ ନେଇଛନ୍ତି । ଏହି ସମ୍ପର୍କରେ ଆଲୋଚନା କଲେ ଜଣାଯାଏ ଯେ, ଖ୍ରୀ:ଅ: ୧୭୪୧-୫୧ ଏହି ଦଶବର୍ଷ ବ୍ୟାପି ଓଡ଼ିଶାର ମୋଗଲ ସୁବେଦାର ଆଲିବର୍ଦ୍ଦି ଓ ମରହଟ୍ଟାଙ୍କ ମଧ୍ୟରେ ସଂଘର୍ଷ ହୋଇଥିଲା । ରାଜା ବୀରକେଶରୀ ଦେବ ପ୍ରଥମେ ମୁର୍ଶିଦ୍‌କୁଲି ଖାଁଙ୍କ ପକ୍ଷ ସମର୍ଥନ କରିଥିଲେ; ପରେ ମୀରହବିବ୍ ଓ ବୀର କେଶରୀ ଦେବଙ୍କର ବନ୍ଧୁତା ହୋଇଥିବାରୁ ସେ ମରହଟ୍ଟାମାନଙ୍କ ପକ୍ଷ ସମର୍ଥନ କରି ତାଙ୍କ ମରହଟ୍ଟା ମାନଙ୍କ ) ଆଗମନକୁ ସ୍ୱାଗତ ଜଣାଇଥିଲେ ।

୧୭୬୦ ଖ୍ରୀଷ୍ଟାବ୍ଦରେ ପାରଳାଖେମୁଣ୍ଡିର ରାଜା ଜଗନ୍ନାଥ ନାରାୟଣ ଦେବ ଓଡ଼ିଶାର ଠାକୁର ରାଜାଙ୍କର ପ୍ରକୃତ ଦାୟକ ରୂପେ ବାଣପୁର ଜୀତି ନେଇ ଖୁର୍ଦ୍ଧା ଆକ୍ରମଣ କରିଥିଲେ । ସେହି ଯୁଦ୍ଧରେ ଗଜପତି ବୀର-କେଶରୀ ଦେବ ପରାସ୍ତ ହୋଇ ମରହଟ୍ଟା ସୁବେଦାର ଶିଓଭଟ୍ଟ ସାଠେଙ୍କ ଶରଣାପନ୍ନ ହୋଇଥିଲେ । ମରହଟ୍ଟାମାନେ ପାରଳା ରାଜା ଜଗନ୍ନାଥ ନାରାୟଣ ଦେବଙ୍କୁ ହଟାଇ ଦେଇ ଖୁରୁଧା ରାଜ ସିଂହାସନରେ ବୀରକେଶରୀ ଦେବଙ୍କୁ ପୁନଃ ଅଧିଷ୍ଠିତ କରାଇଥିଲେ ସତ, କିନ୍ତୁ ଯୁଦ୍ଧବ୍ୟୟ ବାବଦ୍ ଅର୍ଥ ଦାବୀ କରି ବୀରକେଶରୀ ଦେବଙ୍କ ଅଧୀନରେ ଥିବା କେତେକ ଗୁରୁତ୍ୱପୂର୍ଣ୍ଣ ଅଞ୍ଚଳ ନିଜ ଦଖଲକୁ ନେଇ ଯାଇ ଥିଲେ । ଏ ସମ୍ପର୍କରେ ଆଲୋଚନା କରି ଐତିହାସିକ ଶ୍ରୀ କେଦାର ନାଥ ମହାପାତ୍ର ଲେଖିଛନ୍ତି—

"... ବୀରକେଶରୀ ଦେବ ଚୁକ୍ତି ଅନୁଯାୟୀ ଯୁଦ୍ଧ ବ୍ୟୟ ବାବଦ୍ ଟଙ୍କା ପରିଶୋଧ କରି ନ ପାରିବାରୁ ତାଙ୍କ ରାଜ୍ୟର ଉତ୍କୃଷ୍ଟ ଅଂଶ ରାହାଙ୍ଗ, ଲେମ୍ବାଇ ଓ ପୁରୁଷୋତ୍ତମ କ୍ଷେତ୍ର ଅର୍ଥାତ୍ ଦୟାନଦୀ, ସମୁଦ୍ର ଜଗନ୍ନାଥ ସଡ଼କ ଓ ଚିଲିକା ମଧ୍ୟବର୍ତ୍ତୀ ଅଞ୍ଚଳ ଓ ଏପର୍ଯ୍ୟନ୍ତ ଖୁରୁଧା ରାଜାଙ୍କ ଅଧୀନରେ ଥିବା ଚଉଦଟି ଗଡ଼ଜାତ ରାଜ୍ୟରୁ ରାଜସ୍ୱ ଆଦାୟ କ୍ଷମତା ସାମୟିକ ଭାବରେ ମରହଟ୍ଟା ସୁବାଦାରଙ୍କୁ ଛାଡ଼ି ଦେଲେ । ମରହଟ୍ଟା ମାନେ ଉକ୍ତ ଅଧିକାର ଆଉ ଛାଡ଼ି ନଥିଲେ !

( ଖୁରୁଧା ଇତିହାସ—ପୃଷ୍ଠା ୬୦୫ )

ଏହି ଘଟଣା ପରେ ମରହଟ୍ଟାମାନଙ୍କ ଲୋଲୁପଦୃଷ୍ଟି ସାମଗ୍ର ଖୁରୁଧା ରାଜ୍ୟ ଉପରେ ପଡ଼ିଲା । ସେମାନେ ବୀରକେଶରୀ ଦେବଙ୍କୁ ପାଗଳ ବୋଲି ଘୋଷଣା କରି, ସୁବେଦାର ରାଜାରାଜ ପଣ୍ଡିତ ଖ୍ରୀ: ଅ: ୧୭୭୯ରେ, ତାଙ୍କୁ ବନ୍ଦୀ କରି ବାରବାଟୀ ଦୁର୍ଗରେ ରଖିଥିଲେ । ଏହି ନିର୍ଯ୍ୟାତିତ ଅବସ୍ଥାରେ ରାଜା ବୀରକେଶରୀ ଦେବ ପତିତ ପାବନ, ମହାବାହୁ, ଦୀନବନ୍ଧୁ ଶ୍ରୀଜଗନ୍ନାଥଙ୍କ ଠାରେ ପ୍ରାର୍ଥନା କରି ବନ୍ଦୀଶାଳାରେ

"ଭୁଜଙ୍ଗେ ମୋତେ ରଖ ମହାବାହୁ" ଶୀର୍ଷିକ ଭଜନଟି ଲେଖିଥିବେ ।

ଆହୁରି ମଧ୍ୟ କେତେକ ପଦ୍ୟରେ ଥିବା 'ବଂଶୁଜଭୁଜ ବସ୍ତାରି ଦେଲେ ଛାରି କି କରି ପାରିବ ଦୁଃଖ, ଭାସିଯାଉଅଛି ଏ ଭବସାଗରେ ରକ୍ଷାକର ଭବଗ୍ରାହୀ, ମୁଁ ଅଳି ପଣ୍ଡିତ ଭରଷା କରିଛି ପ୍ରଭୁ ଶ୍ରୀଚରଣ ତଳେ' ପ୍ରଭୃତି ପଦାବଳୀ ଏ ପ୍ରକାର ଅନୁମାନକୁ ପୁଷ୍ଟ କରିଥାଏ ।

ଏ ଧରଣର ଗୋଟିଏ ଆର୍ତ୍ତ–ଭଜନ ରାଜକବି ନିଜେ ଅଙ୍ଗେ ଲାଗିଥିବା ଦୁଃଖ ବର୍ଣ୍ଣନା କରି ଲେଖିଥିବାରୁ ଅନୁମାନ କରିବା ଅସମୀଚୀନ ବୋଲି ମନେ ହୁଏ ନାହିଁ । କବି ବନମାଳୀ ପଦ୍ୟ ଗୁଡ଼ିକ ରଚନା କରି, ପୃଷ୍ଠ ପୋଷକ ରାଜା ବୀରକେଶରୀ ଦେବଙ୍କ ନାମରେ ଭଣିତା କରିଥିଲେ ବା ନିଜେ ରାଜା ନିଜର କବି ପ୍ରତିଭାବଳରେ ସେ ଗୁଡ଼ିକୁ ରଚନା କରି-ଥିଲେ, ତାହା ଏକ ବିବଦମାନ ପ୍ରସଙ୍ଗ । ତଥାପି ସେସବୁ ପଦ୍ୟ ଗୁଡ଼ିକ ବନମାଳୀ ଦାସଙ୍କ ରଚନା ବୋଲି ଆଲୋଚକମାନଙ୍କ ମହଲରେ ଗୃହୀତ ହୁଏ ।

କିମ୍ବଦନ୍ତୀରୁ ଜଣାଯାଏ ଯେ, କବି ବନମାଳୀ ପରିଣତ ବୟସରେ ସନ୍ନ୍ୟାସ ଗ୍ରହଣ କରି ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ସେବାରେ କିଛି କାଳ ଅତିବାହିତ କରିବା ପରେ,ତୀର୍ଥ ଭ୍ରମଣ ଉଦ୍ଦେଶ୍ୟରେ ଶ୍ରୀକୃଷ୍ଣଙ୍କ ଲୀଳାସ୍ଥଳୀ ବୃନ୍ଦାବନ ଧାମକୁ ଯାତ୍ରା କରିଥିଲେ । ସେ ଅବଶ୍ୟ ଶ୍ରୀକ୍ଷେତ୍ରରେ ଶେଷ ନିଃଶ୍ୱାସ ତ୍ୟାଗ କରିବାର ବାସନା ପୋଷଣ କରିଥିଲେ । କିନ୍ତୁ ତାଙ୍କର ସେ ବାସନା ପୂରଣ ହୋଇ ନଥିଲା । ସେ ମଧ୍ୟ ପୁରୀକ୍ଷେତ୍ର ଉପରେ ବୈଦେଶିକମାନଙ୍କର ଘନ ଘନ ଆକ୍ରମଣ ତଥା ନିଜ ପୃଷ୍ଠପୋଷକଙ୍କ ଶୋଚନୀୟ ଅବସ୍ଥାରେ ଅତିଷ୍ଠ ହୋଇ ଉଠୁଥିବେ । ତେଣୁ ସେ ବୃନ୍ଦାବନରେ ହିଁ ଦେହ ତ୍ୟାଗ କରିଥିବାର ଜନଶ୍ରୁତି ଶୁଣିବାକୁ ମିଳେ । ଦେହ–ତ୍ୟାଗ ସମୟରେ ତାଙ୍କର ବୟସ କେତେ ହୋଇଥିଲା ଓ ସେ କିପରି ଭାବରେ ବୃନ୍ଦାବନରେ କାଳାତିପାତ କରୁଥିଲେ, ସେ ସମ୍ପର୍କରେ

କୌଣସି ତଥ୍ୟ ହସ୍ତଗତ ହୁଏ ନାହିଁ । କିନ୍ତୁ ସେ ଜଣେ ଉନ୍ନତ ଧରଣର ଭକ୍ତକବି ରୂପେ ଯେଉଁ ପଦ୍ୟାବଳୀ ଓଡ଼ିଆ ପାଠକମାନଙ୍କ ହସ୍ତରେ ଅର୍ପଣ କରି ଯାଇଛନ୍ତି, ତାହା ଆମ ଜାତିର ଅମୂଲ୍ୟ ସମ୍ପଦ ଏବଂ ଓଡ଼ିଆ ଭକ୍ତି-ସାହିତ୍ୟର ଏକ ପ୍ରଧାନ ବିଭବ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।



# କବି ବନମାଳୀଙ୍କ ପଦ୍ୟାବଳୀର
## ଆଙ୍ଗିକ ଓ ଆତ୍ମିକ ମୂଲ୍ୟାଙ୍କନ ।

ଓଡ଼ିଆ ସାହିତ୍ୟରେ ବିଭିନ୍ନ ଭକ୍ତିଧାରା ସମ୍ବନ୍ଧରେ ଆଲୋଚନା କଲେ ଜଣାଯାଏ ଯେ, ସାରଳାଦାସଙ୍କ ଠାରୁ ଆରମ୍ଭ କରି ଅଦ୍ୟାବଧି ଆମ ସାହିତ୍ୟରେ ବହୁ ଧାର୍ମିକ ପ୍ରକାଶ ଲାଭ କରିଛନ୍ତି । ଏହିକ ଧାରାରେ ଦାସ ରାମ, କୃଷ୍ଣ, ଶିବ, ଦୁର୍ଗା, ଗଣେଶ ପ୍ରଭୃତି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ମାହାତ୍ମ୍ୟ ମହାକବିମାନେ ବିଭିନ୍ନ ପ୍ରକାରରେ ପ୍ରଖ୍ୟାପନ କରିଛନ୍ତି । ସେହି ଯୁଗରୁ ଆରମ୍ଭ କରି ଆମ ସାହିତ୍ୟରେ ଶ୍ରୀରାମ, ଶ୍ରୀକୃଷ୍ଣ, ଶ୍ରୀଜଗନ୍ନାଥ ଓ ନିର୍ଗୁଣ ଭକ୍ତିଧାରାର ପ୍ରବାହ ସ୍ବଚ୍ଛନ୍ଦ ରୂପେ ବହିବା ସଙ୍ଗେ-ସଙ୍ଗେ ଜନମାନସକୁ ସିକ୍ତ କରିଛି । ସେହି ଧାରା-ପ୍ରବାହରେ ପ୍ରବାହିତ ହୋଇ ଭକ୍ତକବି ତାଙ୍କ ରଚନାରେ ଶ୍ରୀରାମଲୀଳା, ଶ୍ରୀକୃଷ୍ଣଲୀଳା, ଶ୍ରୀଜଗନ୍ନାଥ ଓ ନିର୍ଗୁଣ ଭକ୍ତିଧାରାର ସ୍ରୋତ ଛୁଟାଇଛନ୍ତି ।

କବି ବନମାଳୀଙ୍କ 'ସୁଚିତ୍ରରାମାୟଣ' ପୁସ୍ତକଟି ଶ୍ରୀରାମଲୀଳା ସମ୍ବଳିତ ଖଣ୍ଡିଏ ଉତ୍କୃଷ୍ଟ ପୁସ୍ତକ । ସେ ସେଥିରେ 'ରାମାୟଣ'ର ଆଦ୍ୟକାଣ୍ଡ ଠାରୁ ଆରମ୍ଭ କରି ଲଙ୍କାକାଣ୍ଡ ପର୍ଯ୍ୟନ୍ତ ସମଗ୍ର ରାମଲୀଳାକୁ ପୁଙ୍ଖାନୁପୁଙ୍ଖ ରୂପେ ବର୍ଣ୍ଣନା କରିଛନ୍ତି । କବି ବନମାଳୀ 'ସୁଚିତ୍ରରାମାୟଣ'ରେ 'ରାମାୟଣ'ର ଉତ୍ତରକାଣ୍ଡ ସମ୍ପର୍କରେ ବର୍ଣ୍ଣନା କରି ନାହାନ୍ତି । କାରଣ ତାଙ୍କର ରଚନାଟି ମୁଖ୍ୟତଃ ଭୋଜରାଜଙ୍କ 'ଚମ୍ପୂ'ର ଅବଲମ୍ବନରେ ଲେଖା ହୋଇଥିବାରୁ, ସେ ତାହା ଓଡ଼ିଶାର ଭକ୍ତଜନମାନଙ୍କ ଉଦ୍ଦେଶ୍ୟରେ ଅନୁବାଦ କରି ଅଛନ୍ତି ।

"ଶୁଣ ସାଧୁଜନ      ସେ ମହାରାଜନ
ଭୋଜ ନାମେ ନରପତି ।
ଶ୍ରୀରାମଚରିତ      ସିଜଗତେ ଖ୍ୟାତ
ଯାହା ଚମ୍ପୂ କରିଛନ୍ତି ।।

× × ×

ନାନା ରାଗତାଳ ବନ୍ଧରେ ମଧୁର
ଯେ ହେଲେ ଏ ମୋର ଗୀତ ।
ଭବବ୍ୟଥା ନାଶ କରିବ ଅବଶ୍ୟ
ଶୁଣିବେ ଯେତେନେ ସନ୍ତ ।।

ଯେଣୁ ରଘୁମଣି କର୍ମ ଯେହ୍ନା ଶୁଣି
ଆଦର କରନ୍ତେ ଧୀର ।
ଲଭେ ଏହାଗାନ ହେ ମାଧବ କର୍ଣ୍ଣ-
ଯୁଗଳୁ ହେବ ମଧୁର ।।

( ସୁଚିତ୍ର ରାମାୟଣ, ଆଦ୍ୟକାଣ୍ଡ, ଦ୍ୱିତୀୟଗୀତ )

"ଛନ୍ଦ କାଣ୍ଡରେ ମୁଁ ନୋହିଲ ସମର୍ପଣ ଗୀତ ।
ଏ ଗ୍ରନ୍ଥେ ବର୍ଣ୍ଣନ ନାହିଁ ଉତ୍ତର ଚରିତ ହେ ।।

ମୋତ ଦୁର୍ବୁଦ୍ଧି ମୁଁ ଭଜନହୀନ ଜନ ।
ପବିତ୍ର ହେବାକୁ କଲି ଏ ଗୀତ ବର୍ଣ୍ଣନ ହେ" ।।

( ସୁଚିତ୍ର ରାମାୟଣ— ଲଙ୍କାକାଣ୍ଡ, ଶେଷଗୀତ )

କବି ବନମାଳୀ ଦାସ ସୁଚିତ୍ର ରାମାୟଣ ବ୍ୟତୀତ ଅନେକ ଗୁଡ଼ିଏ ପଦ୍ୟ ରଚନା କରିଛନ୍ତି । ସେହି ପଦ୍ୟ ଗୁଡ଼ିକୁ ଶ୍ରୀକୃଷ୍ଣଲୀଳା, ଶ୍ରୀଜଗନ୍ନାଥଙ୍କ ଭଜନ, ନିର୍ଗୁଣ ଭକ୍ତିମୂଳକ ଭଜନ ତଥା ଗ୍ରାମ୍ୟଗୀତ; ଏହିପରି ଚାରିଟି ବିଭାଗରେ ବିଭକ୍ତ କରାଯାଇ ପାରେ ।

କବି ବନମାଳୀ ପୂର୍ବାଶ୍ରମରେ ଥିବା ସମୟରେ ନିଜର କବି ପ୍ରତିଭା ବଳରେ କେତୋଟି ଗ୍ରାମ୍ୟଗୀତ ରଚନା କରିଥିଲେ । ଏଥିମଧ୍ୟରେ ନାୟକ ନାୟିକାଙ୍କ ଉକ୍ତି ପ୍ରତ୍ୟୁକ୍ତି, ନାୟିକା ଓ ସଖୀମଧ୍ୟରେ ଉକ୍ତି ପ୍ରତ୍ୟୁକ୍ତି, ବିଦେଶୀ ନାୟକର ଅନୁଚିନ୍ତା ପ୍ରଭୃତି କେତୋଟି ଗୀତ ରହିଛି ।

ଭାରତୀୟ ଅଳଙ୍କାର ଶାସ୍ତ୍ରରେ 'ଆଦିରସ'ର ପ୍ରାଧାନ୍ୟ ସର୍ବତ୍ର ସ୍ୱୀକାର କରାଯାଇଛି । କାବ୍ୟର ମଞ୍ଜୁଳକାନନରେ ଆଦିରସର ନୈସର୍ଗିକ ଧାରା ରସିକ ତଥା ସହୃଦୟ ପାଠକ ପାଠିକାଙ୍କ ପ୍ରାଣରେ ଅପୂର୍ବ ଶିହରଣ ଖେଳାଇ ଥାଏ । ନାୟକ ନାୟିକା ସେଥିରୁ ଉପରେ ଅଭିଭୂତ ହୋଇ 'ଆତ୍ମାନନ୍ଦ' ଲାଭ କରିଥାନ୍ତି । ସେଥିପାଇଁ ଅଳଙ୍କାର ଶାସ୍ତ୍ରରେ ଆଦିରସର ପ୍ରଶଂସା ବିଶେଷ ଭାବରେ କରାଯାଇଛି ।

କବି ବନମାଳୀ ଜୀବନର ପ୍ରଥମାବସ୍ଥାରେ ଗ୍ରାମ୍ୟଗୀତ ଗୁଡ଼ିକର ରଚନା କରିଥିବାରୁ, ତାଙ୍କ ହୃଦୟର ଶୃଙ୍ଗାରି ଭାବନାକୁ ସେ ତାହାର ମାଧ୍ୟମରେ ବ୍ୟକ୍ତ କରିଛନ୍ତି । ସେଥିମଧ୍ୟରେ ନାୟକ ନାୟିକାଙ୍କ ପରିହାସ ମୂଳକ ରଚନା ଗୁଡ଼ିକ ଅତ୍ୟନ୍ତ ହୃଦୟଗ୍ରାହୀ ହୋଇ ପାରିଛି । ରସିକ ନାୟକ ନାୟିକାର କୁଚଯୁଗଳର ବର୍ଣ୍ଣନା କରିବାକୁ ଯାଇ ପରି-ହାସଛଳରେ କହନ୍ତି—

"ଏହାକୁ ପାଇଲୁ କାହିଁକେ ହଙ୍ଗାଚ,
ଏହାକୁ ପାଇଲୁ କାହିଁ ?
ଚନ୍ଦ୍ରସୂର୍ଯ୍ୟଙ୍କୁତ ସେବାରେ ମନାଇଁ
ଈଶ୍ୱରେ ପାଇଛୁ ଧାର୍ଯ୍ୟିରେ ।

× × ×

କେଉଁ ବିଜ୍ଞାଣି ବିଶ୍ୱକର୍ମା ଗଢ଼ିଛି,
ତୋ କୁଚ କୁନ୍ଦେ ବସାଇ ।
ହୀରାମଣି ମୋତି ମାଣିକ୍ୟ ପୂରାଇ,
ମର୍କତ ଢ଼ାଙ୍କୁଣି ଦେଇ ରେ" ।।

କବିଙ୍କର ମନ ରାଧାକୃଷ୍ଣଙ୍କ ବ୍ରଜଲୀଳାରେ ମଜ୍ଜିଯାଇ ଥିବାରୁ ସେ

ଗ୍ରାମ୍ୟଗୀତ ମଧ୍ୟରେ ସୁଦ୍ଧା ରାଧାକୃଷ୍ଣଙ୍କ ଲୀଳାର ଅବତାରଣା କରିବାକୁ ଭୁଲି ନାହାନ୍ତି । ତେଣୁ ସେ ନାୟକ ମୁଖରେ ପରିହାସ ଛଳରେ ବ୍ରଜ-ବାଳୀଙ୍କ ଗହଣରେ ହରିଲକ୍ଷ୍ମୀଙ୍କ ବନ୍ଦନାର ପ୍ରସଙ୍ଗ ଉତ୍ଥାପନ କରି ମୁଗ୍ଧକଣ୍ଠରେ ଗାଉଛନ୍ତି—

" ଯେଉଁଦିନ ହରିଲକ୍ଷ୍ମୀ ବନ୍ଦାପନା,
କଲେ ସବୁ ବ୍ରଜବାଳୀ ।
ସେହିଦିନ ଭୃଙ୍ଗ ମର୍କଟମଣ୍ଡୁଆ,
ଆଣିଥିଲୁ ଚୋରି କରି ରେ ॥
ବନମାଳୀ କହେ ଚୋରି ଯେବେ ନୋହେ,
ବସନ କାହିଁକି ଡ଼ାକୁ ?
ଚୋହରି ଯେବେ ସେ ଅର୍ଜିଲୁ ସମ୍ପତ୍ତି,
ଫେଡ଼ିଦିଅ ନେଇ ଦେଖୁ" ॥

ନାୟକ ମୁଖରେ ନାୟିକାର ଅପରୂପବର୍ଣ୍ଣନା ପ୍ରାଚୀନ ସାହିତ୍ୟରେ ଏକ ମନୋଜ୍ଞ ପରିବେଶ ସୃଷ୍ଟି କରିଥାଏ । ଅନେକ କାବ୍ୟରେ କବି-ପ୍ରୌଢ଼ୋକ୍ତି ଛଳରେ ନିଜେ କବି ନାୟିକାର ନଖଶିଖ ବର୍ଣ୍ଣନା, ଓ ବେଶ ବର୍ଣ୍ଣନା କରିଥାନ୍ତି । ଅନ୍ୟ କେତେକ କବି ନାୟକ ମୁଖରେ ନାୟିକାର ସୌନ୍ଦର୍ଯ୍ୟ, ବିଶେଷତଃ ବେଶ ବର୍ଣ୍ଣନା କରାଇ କାବ୍ୟର ସୌନ୍ଦର୍ଯ୍ୟ ବୃଦ୍ଧି କରିଥାଆନ୍ତି । ମାନିନୀ ନାୟିକାର ମାନଭଞ୍ଜନ ନିମିତ୍ତ ତା'ର ସୌନ୍ଦର୍ଯ୍ୟ ବର୍ଣ୍ଣନା ପୂର୍ବକ ଧୃଷ୍ଟପ୍ରକାଶ କରିବାର ରୀତି କାବ୍ୟ-ଶାସ୍ତ୍ରରେ ବହୁଳଭାବରେ ସ୍ୱୀକୃତ ହୋଇଛି । କବି ବନମାଳୀ ହେଲେ କବି ପରମ୍ପରାର ଅନୁସରଣରେ କେତୋଟି ଗ୍ରାମ୍ୟଗୀତରେ ନାୟକ ମୁଖରେ ନାୟିକାର ବେଶ ବର୍ଣ୍ଣନା କରାଇ ରସିକପାଠକ ପ୍ରାଣରେ ଆନନ୍ଦର ହିଲ୍ଲୋଳ ଖେଳାଇ ଅଛନ୍ତି ।

"ବାଲୁଙ୍କି ଲଉଛୁ ଆଜ ବୀରବେଶ ରେ ।
କପାଳ ସାରଙ୍ଗ ତାର ଭ୍ରୂଯୁଗଳ ବେଶରେ

ନେତ୍ର ପଞ୍ଚଶର ହନ୍ତି ଧୈର୍ଯ୍ୟ କରେ ନାଶରେ ।
ଶୋଭାପାଉଅଛି ତାର ତୋଷ ଚନ୍ଦ୍ରହାସରେ ।
ନମ୍ରେ ଚଳଇ ପାଇନାହିଁ ରନ୍ତିରସରେ ॥
ସୁମନ ଗଭା ପାଗ ବନ୍ଧିଛି ଶିରଦେଶରେ ।
ଜାନୁଯୁଗ ନନ୍ଦେ ବାନ୍ଧିଛି ଝୀନବାସ ରେ ॥
ଝୁଣ୍ଟିଆ ନାଗର ବଜାଉଛି ଗତି ରସରେ ।
ଅଞ୍ଚଳ କୋଣ ଚନ୍ଦ୍ରିକା ଉଡ଼େ ମସ୍ତଦେଶରେ" ॥

× × ×

କଳାବତୀ ଖଞ୍ଜନାକ୍ଷୀ ଗୁରୁନିତମ୍ବିନୀ ।
ଘନକେଶୀ ଭଙ୍ଗୁରଶାଖୀ ଚମ୍ପକବର୍ଣ୍ଣୀ ।
ସ୍ମରପଠିମାରେ ॥
ଜଳଜବାସିନୀ ଝୀନବସନା ନବୀନା ।
ନେତ୍ରକଜ୍ଜଳା ଚନ୍ଦ୍ରମୁଖୀ ଡାଳିମ୍ବ ଦଶନା ।
ଚିଗବଚନାରେ !

× × ×

ଲାବଣ୍ୟନିଧି ଚତୁର-ବେଶ ମନୋହର ।
ଶଚୀପତି ଶିକ୍ଷାଦାୟୀ ସ୍ମରଦର୍ପ-ହର ।
ସିଦ୍ଧିପସରା ରେ ?
ହାସମଞ୍ଜୁଳା ହୃଦବନ୍ଧୁତାପଧ୍ୱଂସକର ।
ଷଟ୍ଦୋକାନ୍ତ ଭୁ ବନମାଳୀ ଘନମୁଖ ।
କ୍ଷମାନିଧାନରେ' ॥

ବଦେଶୀ ନ ସୂକର ଅନୁଚନ୍ଦ୍ରା ଓଡ଼ିଆ ସାହିତ୍ୟରେ ଗୋଟିଏ ସ୍ୱତନ୍ତ୍ର ବୈଭବ ରୂପେ ସ୍ଥାନ ଅଧିକାର କରେ । ପୋଇ, ବୋଲି, କୋଇଲି

ପର 'ପଦଅ' ମଧ୍ୟ ବହୁ ସଙ୍ଖ୍ୟାରେ ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀରେ ରଚିତ ହୋଇଛି । ଉପେନ୍ଦ୍ର ଭଞ୍ଜ, ବାମଦେବ ପଟ୍ଟନାୟକ, ବ୍ରଜସୁନ୍ଦର ପଟ୍ଟନାୟକ, ବାଲ୍ମିକୀ ଶରଣ ପ୍ରଭୃତି କବିମାନେ ଅନେକ 'ପଦଅ' ରଚନା କରିଛନ୍ତି । 'ପଦଅ' ଗୁଡ଼ିକ ଯେତିକି ପଦରେ ଶେଷ ହୋଇଥାଏ, ସେତିକି ସଂଖ୍ୟକ ପଦଅ ବୋଲି କବିମାନଙ୍କର ନାମକରଣ କରାଯାଇଥାଏ । ଓଡ଼ିଆ କବିମାନଙ୍କ ଦ୍ୱାରା ଦ୍ୱାଦଶପଦଅ, ପନ୍ଦରପଦଅ, ପଚିଶପଦଅ, ଶତେ-ପଦଅ ପ୍ରଭୃତି ପ୍ରାପ୍ତ ଶତସଙ୍ଖ୍ୟକ ପଦଅ ରଚିତ ହୋଇ ଓଡ଼ିଆ ସାହିତ୍ୟରେ 'ଅନୁଚନ୍ତା' ବା 'ଓଡ଼ିଆ ପଦଅ' ଶୀର୍ଷକ ଗୋଟିଏ ସ୍ୱତନ୍ତ୍ର ବିଭବ ଜନମାନସକୁ ଆପ୍ଲୁତ କରାଇଛି । ଉଦାହରଣ ସ୍ୱରୂପ 'ଓଡ଼ିଆପଦଅ'ରୁ କେତୋଟି ପଦ୍ୟାଂଶ ଏଠାରେ ଉଦ୍ଧୃତ ହେଲା ।

" ପଡ଼ି ଏ ଉର୍ଦ୍ଧମାନ ମାନସରେ ।
ସଡ଼ିଯାଏ ତନୁ ଅତନୁଶରେ ।
ଜଡ଼ ନଥିଲେ ଯୁବଶରସରେ ।
ଗୋଚର ହେବକି ଏ ମାରସରେ
ପଡ଼ି ପ୍ରବାସରେ ।
ସଡ଼ିଲା ନବୀନା ବିନା କ୍ଲେଶରେ ।
( ନବଦୁର୍ଗା ନାଟଙ୍କ ବାଉନପଦଅ)

ପଟ ନାହିଁ ଜଗତରେ ତୋ ବିନା ।
ହଟ ନାଗମଣି ଜାଣି କରନା ॥
ପଟଲଗି ତୋର କରିବା ପାଇଁ ।
ଝଟ୍‌କା କରୁଛି ମୋତେଟି ବହି ॥
ଘନସ୍ତନୀ ଘେନ,
ପଟ୍ଟନାୟକ ବାଲ୍ମିକୀ ବଚନ ॥
(ବାଲ୍ମିକୀ ପଟ୍ଟନାୟକଙ୍କ ପନ୍ଦରପଦଅ)

ଶରଦଋତୁ ରଜନୀରେ ଦିନେ ।
ଶର୍ବରୀନାଥ ଉଦୟ ଗଗନେ ॥
ସୁନ୍ଦର କେଶାକୁ ମୁଁ ବବାସ ।
ସିନାମାନ କଲା ହେଲଟି ଦୋଷ ॥
ସାରସ ଗତକ,
ସାଉକର ପଣ୍ଟରିବୁ ଏତକ ॥
( ଅଷ୍ଟଦୁର୍ଗନାଥଙ୍କ ଏକୋଇଶ ପଦଆ )

× × ×

ପ୍ରଣୟମନେ କାନ୍ତ ଦୁଃଖୀ ହୋଇ ।
ପ୍ରିୟା ପ୍ରଣଦ୍ୱନ୍ଦ ଭାବ ଛଡ଼ାଇ ॥
ପୁରତେ ଦୂତୀକ କହେ ଏ ଭାଷା ।
ପ୍ରାଣ ପ୍ରଭୁ ମୋର ସେ ମୃଗଦୃଶା ॥
ପଗୃରବୁ ତାକୁ,
ପରାଣ ଗଲେ ରୁଷିବ କାହାକୁ ?
(ଜ୍ଞାତନାମା କବିଙ୍କ ଛତିଶପଦଆ )
ଦିନେ ଚନ୍ଦ୍ର ଉଦେ ହେବାର ଦେଖି ।
ବୋଇଲେ ସ୍ୱାହାଁରେ ଚନ୍ଦ୍ରମା ମୁହାଁ ॥
ପୂର୍ବଦନ୍ତୀଶୁଙ୍ଗ କୁମ୍ଭ ବଦାର ।
ବାହାର ହୋଇଛି ମତ୍ତକେଶରୀ ॥
ରମଣୀ ସ୍ୱହିଁଲ,
ହସି ମୋତିମାଳା ପକାଇ ଦେଲା ॥
( ବାଲ୍ଜୀ ଶରଣଙ୍କ ଶହେପଦଆ )

× × ×

ଅଧୋମୁଖୀ ପଦ୍ମ ହୋଇଲା ବାଳା ।

ଥକଚ ନୁହଇ ନୟନ ଡୋଳା ॥
ମଦନ ପଞ୍ଚଶରେ ମତ୍ତ ହେଲ ।
ଗଣ୍ଡେ ଚୁମ୍ବଦେବ ଧନ ବୋଇଲ ।
ଉହୁଁ ଉହୁଁ କଲ,
କୁସୁମାପିଦ୍ଧା ଶାଢ଼ୀ ମୁଖେ ଦେଲ ।
( ଧ୍ରୁମଦେବଙ୍କ ଗୀତିକା )

× × ×

ଘନଜଘନ ଭୁ ନବମୁକୁତା ।
ଗୁଛୁ ଯେ କର ମୋତେ ପାଟସୂତା ॥
ଖେଳରେ ଯେଣୁ କଲୁ ପରିରମ୍ଭ ।
କଲୁ ପୁଣି ଏବେ ଏହା ଆରମ୍ଭ ॥
କୁନ୍ଦଦର୍ ହାସି !
କାଳଯାକ କ ହେବ ପଲ୍ଲିବାସୀ" ?

ଏହି ପରିପ୍ରେକ୍ଷୀରେ ଅନୁପ୍ରାଣିତ ହୋଇ କବି ବନମାଳୀ ତାଙ୍କ ରଚନା ମଧ୍ୟରେ କେତୋଟି ଅନୁଚନ୍ତା ମୂଳକ ପଦ୍ୟ ରଚନା କରିଛନ୍ତି । ଅବଶ୍ୟ କବି ଯେଉଁ ଅନୁଚନ୍ତା ରଚନା କରିଛନ୍ତି, ତାହା 'ପଦଆ' ଅବଲମ୍ବନରେ ଅନୁଚନ୍ତାମୂଳକ ହୋଇ ନଥିଲେ ହେଁ ଅତ୍ୟନ୍ତ ଭାବଗର୍ଭକ ତଥା ହୃଦୟସ୍ପର୍ଶୀ ହୋଇ ପାରିଛି ।

"ଆହା ମୋର ରତ୍ତ ଲଳସା;
ମନେ ପଡ଼େ ତୋର ଶ୍ରୀମୁଖ ଶଶୀ ।
ଦର ଦରହାସ ପୀୟୁଷ ପ୍ରକାଶ କୁଞ୍ଚିତ ସୁନୀଳ ଭ୍ରମର କେଶା ॥
ଦିନେ ଗ୍ରୀଷ୍ମରେ ବୃନ୍ଦତଳରେ ।
ବସି ପର୍ ଧନ ମୋର କୋଳରେ ॥

ତାମ୍ବୁଳ ଭୁଞ୍ଜାଇ ମାନସ ରଞ୍ଜାଇ ବନ୍ଧିଥିଲୁ ଚୁମ୍ବ ଚରଣେ ତୋଷି ।।

× × ×

ବନେ ଘନରାତ୍ର ପାହାନ୍ତ ଜାଣି ।
ସ୍ମରନ୍ତି ଆଶାରେ ଧରିଲା ଠାଣି ।
ଇତ ବିପରୀତ ତୋଷିଲୁ ଯେ ଶତ ବନମାଳୀ ଗୁଣ୍ଠୁ ପଦକେ ଘର୍ଷି" ।।

ଏହି ପରିପ୍ରେକ୍ଷୀରେ ଦେଖିବାକୁ ଗଲେ କବି ବନମାଳୀଙ୍କ ଗ୍ରାମ୍ୟ-ରସ ପଦ୍ୟ ଗୁଡ଼ିକ ବେଶ୍ ହୃଦୟଗ୍ରାହୀ ହୋଇ ପାରିଛି ଏବଂ ତାହା ଉଭୟ ସହୃଦୟ ପାଠକ ତଥା ସାଧାରଣ ପାଠକ ପାଠିକାଙ୍କ ପକ୍ଷରେ ଅତ୍ୟନ୍ତ ଉପଭୋଗ୍ୟ ହୋଇଛି ।

କବି ବନମାଳୀ ସନ୍ନ୍ୟାସ ଗ୍ରହଣ କରିବା ପରେ ଗ୍ରାମ୍ୟରସ-ମୂଳକ ପଦ୍ୟରଚନା କରିବାକୁ ମନବଳାଇ ନାହାନ୍ତି । ସେ ନିଜର ଇଷ୍ଟଦେବ ତଥା ଆରାଧ୍ୟ ଗୋପୀଜନବଲ୍ଲଭ ଶ୍ରୀକୃଷ୍ଣଙ୍କ ପଦାରବିନ୍ଦରେ ମନପ୍ରାଣ ଢାଳି ଦେଇ ତାଙ୍କରି ଲୀଳା ସମ୍ବଳିତ ପଦ୍ୟ ରଚନା କରିବାରେ ନିଜ କବି-ପ୍ରତିଭାର ଆଭିମୁଖ୍ୟ ପରିବର୍ତ୍ତନ କରିଛନ୍ତି ।

କବି ବନମାଳୀ ଦାସଙ୍କ ପଦ୍ୟାବଳୀ ମଧ୍ୟରେ ଶ୍ରୀକୃଷ୍ଣଲୀଳା ବର୍ଣ୍ଣିତ ପଦ୍ୟାବଳୀର ସଂଖ୍ୟା ସର୍ବାଧିକ । କବି ପୁରୀବାସୀ ହୋଇଥିଲେ ହେଁ ତାଙ୍କ ରଚନାରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଜଣାଣ ଖୁବ୍ ବେଶୀ ସ୍ଥାନ ପାଇଁ ନାହିଁ । ଏହାର କାରଣ ସ୍ୱରୂପ କେତେ ଗୁଡ଼ିଏ ଯୁକ୍ତି କରାଯାଇ ପାରେ ।

ପ୍ରଥମ କାରଣ ହେଉଛି— ବୌଦ୍ଧମାନଙ୍କ ବଜ୍ରଯାନ ଶାଖା ଓ ବାମାଚାରୀ ଶାକ୍ତମାନେ ଖ୍ରୀଷ୍ଟୀୟ ଦଶମ ଏକାଦଶ ଶତାବ୍ଦୀରେ ଏକାକାର ହୋଇଯାଇ, ସମାଜରେ ତନ୍ତ୍ରଯାନର ପ୍ରଚଳନ କରାଇଥିଲେ । ସେମାନେ କୃଚ୍ଛ୍ର ସାଧନାରେ ସିଦ୍ଧି ଲାଭ କରି କେତେକ ଆଭିଚାରିକ କାର୍ଯ୍ୟ ବଳରେ ସମାଜରେ ନାନା ପ୍ରକାର ହଟଚମଟ ଦେଖାଇଲେ । ମାରଣ, ମୋହନ,

ବଶ୍ୟ, ଉଚ୍ଚାଟନର ପ୍ରତ୍ୟକ୍ଷ ପ୍ରଭାବ ଫଳରେ ସେମାନେ ସାଧାରଣ ଜନତା; ଏପରକି ଶାସକ ଗୋଷ୍ଠୀକୁ ଆୟତ୍ତ କରି ପାରୁଥିଲେ । ସେମାନେ ଆଭିଚାରିକ କର୍ମରେ ଏତେ ଦୂର ଅଗ୍ରସର ହୋଇଥିଲେ ଯେ, ସେମାନଙ୍କ ଦୌରାତ୍ମ୍ୟରେ ସମାଜ ଥରହର ଡାକ ଛାଡ଼ିଲା ।

ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀର ପ୍ରାରମ୍ଭରେ ଗଙ୍ଗମାନେ ଓଡ଼ିଶାର ଶାସନ ଦାୟିତ୍ୱ ନେବାପରେ, ବାମାଚାରୀମାନଙ୍କ ଦୌରାତ୍ମ୍ୟରୁ ସମାଜକୁ ରକ୍ଷା କରିବାର ଉଦ୍ୟମ କରିଥିଲେ । ସେହି ସମୟରେ ଜୟଦେବ ଆଚାର୍ଯ୍ୟ ପ୍ରାଚୀକୂଳବର୍ତ୍ତୀ କେନ୍ଦୁବିଲ୍ୱରେ ଜନ୍ମଗ୍ରହଣ କରି, ଶ୍ରୀ ଜଗନ୍ନାଥଙ୍କ ସେବାରେ ରତ୍ତି ଶ୍ରୀରାଧାକୃଷ୍ଣ ଲୀଳା ଆଡ଼କୁ ଜନତାର ଦୃଷ୍ଟି ଆକର୍ଷଣ କରିଥିଲେ । ଶ୍ରୀକୃଷ୍ଣ ଓ ଶ୍ରୀଜଗନ୍ନାଥ ମଧ୍ୟରେ ଅଭେଦ କଳ୍ପନା କରି ଜୟଦେବ ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ 'ଗୀତ ଗୋବିନ୍ଦ' ଶୀର୍ଷକ ଗୀତକାବ୍ୟ ରଚନାଟିକୁ ମହାପ୍ରଭୁଙ୍କ ଉଦ୍ଦେଶ୍ୟରେ ଅର୍ପଣ କରିଥିଲେ । ସେଥିରେ ଶ୍ରୀରାଧାକୃଷ୍ଣଙ୍କ 'ରତି-କେଳି ଲୀଳା-ବିଳାସ' ବର୍ଣ୍ଣିତ ହୋଇ ଥିବାରୁ ଜନତାର କାମୁକ ଚେଷ୍ଟାର ଦୃଷ୍ଟିଭଙ୍ଗି ଶ୍ରୀରାଧାକୃଷ୍ଣଙ୍କ ଆଦିରସାତ୍ମକ ଲୀଳାରେ ମନ୍ଦିଯାଇଥିଲା । ସେହି କାଳରୁ ଶ୍ରୀ ଜଗନ୍ନାଥଙ୍କ ଧାମରେ ଶ୍ରୀରାଧାକୃଷ୍ଣ ଲୀଳା ଲୋକପ୍ରିୟତା ଅର୍ଜନ କରି ଆସୁଛି ।

ଦ୍ୱିତୀୟତଃ ଷୋଡ଼ଶ ଶତାବ୍ଦୀର ପ୍ରାରମ୍ଭରେ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ପୁରୀ ଆଗମନ ତଥା ଶ୍ରୀକୃଷ୍ଣ ଲୀଳା-ମୂଳକ କୀର୍ତ୍ତନ ଗାୟନ ଦ୍ୱାରା ଜନସାଧାରଣ ଉଦ୍‌ବୁଦ୍ଧ ହୋଇଥିଲେ । ତାଙ୍କର ସହଯୋଗୀ ଷଡ଼୍ ଗୋସ୍ୱାମୀଙ୍କ ରଚନା ତଥା ତତ୍ ପରବର୍ତ୍ତୀ କାଳରେ ରସିକାନନ୍ଦ ଗୋସ୍ୱାମୀ ଓ ଆଚାର୍ଯ୍ୟ ବଳଦେବ ବିଦ୍ୟାଭୂଷଣଙ୍କ ପ୍ରଚାର ଫଳରେ ଶ୍ରୀକୃଷ୍ଣ ଲୀଳା ଉତ୍କଳରେ ଲୋକପ୍ରିୟତା ଅର୍ଜନ କରିଥିଲା ।

ତୃତୀୟତଃ କବି ଗୋବିନ୍ଦଦାସଙ୍କ 'ଗୋପୀ ଚନ୍ଦନ', ଦୀନକୃଷ୍ଣ ଦାସଙ୍କ ରଚନା 'ରସକଲ୍ଲୋଳ' ର ଆବେଗମୟୀ କବିତା ଜନମାନସକୁ ସ୍ପର୍ଶ କରିଥିଲା । ତାହାର ଫଳରେ ଶ୍ରୀକୃଷ୍ଣଙ୍କ ଲୀଳା ସମ୍ବଳିତ ପଦ୍ୟ

ଶ୍ରୀଜଗନ୍ନାଥଙ୍କ ଲୀଳାବର୍ଣ୍ଣନା ରୂପେ ଗୃହୀତ ହୋଇଥିଲା ।

ଏହି ତିନୋଟି ମୁଖ୍ୟ କାରଣରୁ କବି ବନମାଳୀ କାନ୍ତକୋମଳ ପଦାବଳୀ ବ୍ୟବହାର କରି କୃଷ୍ଣଲୀଳା ମୂଳକ ପଦ୍ୟ ରଚନା କରିବାରେ ମନ ବଳାଇ ଥିଲେ । ସେହି ପଦ୍ୟ ଗୁଡ଼ିକ ଜନସାଧାରଣଙ୍କ ଦ୍ୱାରା ଆଦରର ସହିତ ଗୃହୀତ ହୋଇଁ ଥିବାରୁ, ସେଥିରେ ସେ ଉତ୍ସାହିତ ହୋଇ ଅଧିକରୁ ଅଧିକ ଶ୍ରୀକୃଷ୍ଣଲୀଳା ସମ୍ବଳିତ ପଦ୍ୟ ରଚନାରେ ଦତ୍ତଚିତ୍ତ ହୋଇ ଥିଲେ ।

'ବନମାଳୀ-ପଦ୍ୟାବଳୀ' ରେ ପ୍ରଦତ୍ତ ପଦ୍ୟ ଗୁଡ଼ିକ "ନାମାବଳୀ, ପ୍ରଭାତ ଅବକାଶ, ଚନ୍ଦନଉତ୍ସବ, ହୋରିଖେଳ ଶ୍ରୀରାଧାଙ୍କ ଦ୍ୱାରା ଶ୍ରୀକୃଷ୍ଣଙ୍କ ଦର୍ଶନ, ରୂପାନୁରାଗ, ରୂପପ୍ରଶଂସା, ବେଶପ୍ରଶଂସା, ପୂର୍ବରାଗ, ବିରହିଣୀ ରାଧା, ନବାନୁରାଗ, ବଂଶୀପ୍ରୀତି, ନେହପ୍ରୀତି, ପ୍ରେମାନୁରାଗ, ସ୍ୱାଭିଷ୍ଟଲାଳସା, ଘାଟସଧା; ମାନଲୀଳା, ବିରହଲୀଳା, ଦୂତୀ ପ୍ରେରଣ, ଉତ୍କଣ୍ଠିତା, ଅଭିସାରିକା, ବାସକସଜ୍ଜା, କଳହାନ୍ତରିତା, ଖଣ୍ଡିତା, ଦୁର୍ଜପ୍ୟମାନ, ଗୃହିଠୁ, ସଖୀସାନ୍ତ୍ୱନା, ମାନଭଙ୍ଗ, ମିଳନ, କୁଞ୍ଜଲୀଳା, ଯୁଗଳମିଳନ, ମଥୁରାଗମନ ମାଥୁର ବିରହ" ସମ୍ବନ୍ଧୀୟ ରଚନା ।

କବିଙ୍କ ରଚନା ଗୁଡ଼ିକ ସରଳ ତଥା ସାବଲୀଳ ଭାଷାର ଯାଦୁକରୀ ସ୍ପର୍ଶରେ ମର୍ମସ୍ପର୍ଶୀ ହୋଇ ପାରିଛି । ବାସ୍ତବରେ ଡକ୍ଟର ଚମ୍ପୂଶ୍ ତାଙ୍କ ଆଲୋଚନାରେ ବନମାଳୀଙ୍କ ଭାଷା ପ୍ରୟୋଗର ଚମତ୍କାରିତାକୁ ଉଚ୍ଛ୍ୱସିତ ପ୍ରଶଂସା କରି କହିଛନ୍ତି—

"ତାଙ୍କର କବିତା ଗୁଡ଼ିକର ଭାଷା ସରଳ, ସୁବୋଧ, ମାର୍ଜିତ ତଥା ଭାବଗର୍ଭକ । × × × ସେ ସରଳ ସର୍ବଜନ- ବୋଧ୍ୟ ଭାଷାରେ ତାଙ୍କର ଭାବପସରାକୁ ଉନ୍ମୋଚନ କରି ଦେଇ ଯାଇଛନ୍ତି । × × ତାଙ୍କ ରଚନାରେ ରହିଛି ଖାଣ୍ଟି ଓଡ଼ିଆ ଭାଷାରେ ଦେଶଜ ଓ ତଦ୍ଭବ ଶବ୍ଦଙ୍କର ବହୁଳ ପ୍ରୟୋଗ । × × × କବି ବନମାଳୀଙ୍କ

କବିତା ରାଜ୍ୟରେ ପ୍ରୟୋଗ ହୋଇନିବା କେତେକ ଶବ୍ଦପୁଞ୍ଜ ବେଶ୍ ଭାବୋଦ୍ଦୀପକ—ଆଖିର ଆଖିକାଠ, କଟିମୁରୁଆ ଶୋଷକୁ ସମତ ନୋହିବ, ଦେହଲି ଲୋଦକାର, କେଳିକୁଞ୍ଜ ଡ଼କାଇତ, କୁଞ୍ଜ ଗୁଞ୍ଜମାଳିଆ, ଆମ୍ବଜାମୁଡ଼ାଳିଆ, କଳୀଦଳିଆ, କେମନ୍ତସଜରେ ମୁରଲୀ ବଜାଉ ଆଉରି ଟିକିଏ ବଜା, ପ୍ରୀତି ଯେଉଁକ ସୁଆଦ ତେଉଁକ ତା ପରମାଦ" ଇତ୍ୟାଦି ।

(କବି ବନମାଳୀ ଓ ତାଙ୍କ ପଦ୍ୟାବଳୀ—ପୃ-୭୦)

ଏତଦ୍ ବ୍ୟତୀତ "ସାରଙ୍ଗିଆ, ନବରଙ୍ଗିଆ, ଚନ୍ଦ୍ରକ ଚଳିପ୍ସା, ଭ୍ରୂଭଙ୍ଗିପ୍ସା, ଲଳସ ସଙ୍ଗିପ୍ସା, ଆଡଙ୍ଗ, ଭେକ, ଉଦାଡ଼, ତକାଇବ, ବଳୋକଲେ, ଝାଙ୍କିଆ, ଗାବନ୍ତ, ବଖାଣି, ଏଡ଼ିଲ, ନିହିଲ, ଅଠା କାଠି, ନଗ୍ଧଟ, ଆକଟିଲ, ଲଖାଉ, ଭୁଆକୁଭୁଆ, ପୁଆଣୀ ଭୁଆଷୁଣୀ; ଛଡ଼ା; ଦୁଡ଼; ଥୋପେ; ଲବ, ମେଲନ୍ତୁ, ଆଡ଼ିଚ୍ଛା, ଧପଟି, ଲଟପଟ; ଦୁକ୍ଷଣ, ପଦଶ୍ରମଣା, ପୋଥା," ଆଦି ଦେଶଜ ଶବ୍ଦ ଓ କ୍ରିୟାପଦ ପ୍ରୟୋଗରେ ବନମାଳୀ ଆଶାତୀତ ସଫଳତା ଅର୍ଜନ କରିଛନ୍ତି ।

କବି ବନମାଳୀଙ୍କ ରଚନାରେ ଅନେକ ସଂସ୍କୃତ କ୍ରିୟାପଦ, ସମାସଯୁକ୍ତ ପଦ ଦେଖାଯାଉଥିଲେ ମଧ୍ୟ ସେ ଗୁଡ଼ିକ କର୍ଣ୍ଣକଟୁ ହୋଇ ନାହିଁ । ବରଂ ରସାନୁକୂଳ, ଭାବ ଗାମ୍ଭୀର୍ଯ୍ୟବ୍ୟଞ୍ଜକ ତଥା ଆଙ୍ଗିକ-ବୈଭବକୁ ସମୃଦ୍ଧ କରି ପାରିଛି । କବିଙ୍କ ଶବ୍ଦ ପ୍ରୟୋଗରୁ ଏତିକ ସ୍ପଷ୍ଟ ଜଣାପଡ଼େ ଯେ, ଉଭୟ ସଂସ୍କୃତ ଓ ଓଡ଼ିଆଭାଷାରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା ଏବଂ ରସାନୁକୂଳ ମଞ୍ଜୁଳ ଶବ୍ଦଗଠନରେ ସେ ଧୁରୀଣ ଥିଲେ ।

ଆବଶ୍ୟ କବି ବନମାଳୀଙ୍କ ପୂର୍ବବର୍ତ୍ତୀ କବି ଦୀନକୃଷ୍ଣ; ସାଲବେଗ କବି ସମ୍ରାଟ ଭଞ୍ଜଙ୍କ ଏହି ଧରଣର ଦକ୍ଷତା ଥିଲା । ବିଶେଷତଃ ସର୍ବସାଧାରଣଙ୍କ ବୋଧଗମ୍ୟ ଲଳିତ କୋମଳ ଭାଷା ପ୍ରୟୋଗରେ ଭକ୍ତକବି ସାଲବେଗଙ୍କର ଯେପରି ଦକ୍ଷତା ଥିଲା; କବି ବନମାଳୀ ଅନୁରୂପ ଦକ୍ଷତାର ଅଧିକାରୀ ଥିଲେ । ଆହୁରି ମଧ୍ୟ ଦାସ୍ୟଭକ୍ତି ଭାବରେ କବିଚନ୍ଦ୍ର କୃଷ୍ଣଦାସ; ଯବନକବି ସାଲବେଗ ଯେପରି ନିଜ ନିଜର ପଦ୍ୟ ଗୁଡ଼ିକୁ ରସାଣିତ କରି ଜନମାନସରେ ଅଙ୍କିତ କରାଇ ପାରିଥିଲେ; ଭକ୍ତକବି ବନମାଳୀ

ମେ ଦୁହିଙ୍କ ତୁଳନାରେ କୌଣସି ଗୁଣରେ ଊଣା ନଥିଲେ । ବରଂ କେତେକ ସ୍ଥଳରେ କବି ବନମାଳୀ ପ୍ରେମାନୁଗା ଦାସ୍ୟ ଭକ୍ତିର ଉଚ୍ଚ ସ୍ତରରେ ଭକ୍ତମାନସକୁ ପ୍ରେମାପ୍ଲୁତ କରାଇ ପାରିଥିଲେ । କବି ବନମାଳୀଙ୍କ ଶ୍ରୀକୃଷ୍ଣ ଲୀଳା ମୂଳକ ପଦ୍ୟାବଳୀ; ଭକ୍ତିଭାବନସ୍ୟନ୍ଦନ, ମାଧୁର୍ଯ୍ୟରସ ପ୍ରସ୍ରବଣୀ ଭାବଗାମ୍ଭୀର୍ଯ୍ୟ ଦାସ୍ୟଫିଗ୍ଧ ଭାଷା ଓ ପଦାବଳୀରେ ରଞ୍ଜିତ ହୋଇ ଥିବାରୁ ତାହା ପ୍ରତ୍ୟେକ ଧରଣର ପାଠକ ପାଠିକାଙ୍କ ପକ୍ଷରେ ପ୍ରାଣସ୍ପର୍ଶୀ ହୋଇ ପାରିଛି । ତାହାର ଫଳରେ ବନମାଳୀ ଦାସଙ୍କ ପଦ୍ୟାବଳୀ ଓଡ଼ିଶାର ପ୍ରଚ୍ଚ-କୁଟୀରର ଆବାଳ ବୃଦ୍ଧ-ବନିତାଙ୍କ କଣ୍ଠରେ ପ୍ରତିଧ୍ୱନିତ ହେଉଛି । କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କ କବିତା ସମ୍ବନ୍ଧରେ ଯେପରି କୁହାଯାଏ—

"ବାଳେ ବୋଲେ ଚଷା ଜନେ ପ୍ରଭୁ ଯୋଷା
ନର୍ତ୍ତ୍ୟାଙ୍ଗନେ ବାରାଙ୍ଗନା" ।

ତାହା କବି ବନମାଳୀଙ୍କ ପଦ୍ୟାବଳୀର ଲୋକପ୍ରିୟତା ପ୍ରତି ଅଧିକ ପ୍ରଯୁଜ୍ୟ ବୋଲି ମନେ ହୁଏ ।

ହିନ୍ଦୀ ସାହିତ୍ୟ- ଜଗତରେ ଶ୍ରୀକୃଷ୍ଣ- ଭକ୍ତିଧାରାର କବି ବିଦ୍ୟାପତି ଓ ସୂରଦାସ ଭିନ୍ନ ଭିନ୍ନ ଭାବରେ ଶ୍ରୀକୃଷ୍ଣଙ୍କୁ ଚିତ୍ରଣ କରିବାର ଦେଖାଯାଏ । ବିଦ୍ୟାପତିଙ୍କ ଶ୍ରୀକୃଷ୍ଣ କୌଣସି ଭକ୍ତିଧାରାର ପ୍ରତିନିଧିତ୍ୱ କରନ୍ତି ନାହିଁ । ବରଂ ତାଙ୍କ ବର୍ଣ୍ଣନାରେ ଶ୍ରୀକୃଷ୍ଣଙ୍କ ରସିକତା ଛନ୍ଦେ-ଛନ୍ଦେ ପ୍ରତିଧ୍ୱନିତ ହୋଇଛନ୍ତି । କିନ୍ତୁ ସୂରଦାସଙ୍କ ଶ୍ରୀକୃଷ୍ଣ 'ବଲ୍ଲଭ ସମ୍ପ୍ରଦାୟ'ର ଆରାଧ୍ୟ 'ଶ୍ରୀନାଥ' ( ଗୋବର୍ଦ୍ଧନ ପର୍ବତରେ ପୂଜିତ ବିଗ୍ରହ) ରୂପେ ତାଙ୍କ କବିତାରେ ଲୀଳାବିଳାସୀ ତଥା 'ପ୍ରେମାନୁଗା ଭକ୍ତିଧାରା'ର କୃଷ୍ଣରୂପେ ବର୍ଣ୍ଣିତ ହୋଇଛନ୍ତି । ସୂରଦାସଙ୍କ ଶ୍ରୀକୃଷ୍ଣ ଲୀଳାଦ୍ୱାରା ରସିକ ରୂପେ ଭକ୍ତମାନସକୁ ବିମୋହିତ କରିଛନ୍ତି ।

ସେହି ପରିପ୍ରେକ୍ଷୀରେ ବିଚାର କଲେ, ବନମାଳୀଙ୍କ ଶ୍ରୀକୃଷ୍ଣ ଗୌଡ଼ୀୟସମ୍ପ୍ରଦାୟର ଶ୍ରୀକୃଷ୍ଣ ନ ହୋଇ, ଉତ୍କଳୀୟ ବୈଷ୍ଣବ କବି

ଜୟଦେବ ଓ ରାୟରାମାନନ୍ଦଙ୍କ ବର୍ଣ୍ଣନାରେ ରଚିତ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଠାରୁ ଭିନ୍ନ ନୁହନ୍ତି । ସେ ତାଙ୍କର ଆରାଧ୍ୟ ଶ୍ରୀକୃଷ୍ଣଙ୍କୁ 'କଦାଚିତ୍ କାଳିନ୍ଦୀତଟବିପିନସଙ୍ଗୀତକବରଃ···ଜଗନ୍ନାଥ ସ୍ୱାମି ନୟନ ପଥଗାମୀ ଭବତୁ ମେ' ରୂପେ 'ପଦ୍ୟାବଳୀ'ରେ ବର୍ଣ୍ଣନ କରି ଉତ୍କଳୀୟ ବୈଷ୍ଣବ–ପରମ୍ପରାର ସାର୍ଥକତା ପ୍ରତିପାଦନ କରିଛନ୍ତି । ବନମାଳୀଙ୍କ ଶ୍ରୀକୃଷ୍ଣ 'ଚୂଡ଼ା ଗୁଞ୍ଜମାଳିଆ, ଆମ୍ବଜାମୁଡ଼ାଳିଆ, କାଳିନ୍ଦୀକୂଳିଆ ନୀପମୂଳିଆ, ନିତ୍ୟସ୍ଥଳନାୟକ, ବକାରି'ହେବା ସଙ୍ଗେ ସଙ୍ଗେ 'ଶଙ୍ଖକଣକାଳିଆ ପତିତ ପାବନ, ଚକାଡୋଳା, ନୀଳାଦ୍ରି–ବିହାରୀ;' ଶ୍ରୀଜଗନ୍ନାଥ ରୂପେ 'ପଦ୍ୟାବଳୀ' ରେ ସାକାର ହୋଇ ପାରିଛନ୍ତି । ସେ ଜଣେ ଅକିଞ୍ଚନ ଦାସ ଭାବରେ ନୀଳାଚଳଇନ୍ଦୁ, ଜଗନ୍ନିବାସ, କଳାଧଳା–ସୋଦର, କଳାଶ୍ରୀମୁଖ, ନୀଳାଦ୍ରି ମଣ୍ଡପେ କଞ୍ଜସୁନ୍ଦର ବଦନଙ୍କ' ପାଦପଦ୍ମରେ ଯେପରି ଆଶ୍ରୟ ନେଉଛନ୍ତି; ଠିକ୍ ସେହିପରି, 'ଇନ୍ଦ୍ରନୀଳଜଡ଼ିତନୟ, ବଂଶୀପାଣି, ନବଲାବଣ୍ୟରୂପ ଶ୍ରୀମନ୍ତ ଶିଖି-ଶୃଙ୍ଗକ, ନୂତନଜଳଧର, ସଞ୍ଚବରଣ ଛଡ଼ା ନଟବର, ଯଦୁକୁଳ–କୁମୁଦଚନ୍ଦ୍ର. ଶ୍ରୀକୃଷ୍ଣଙ୍କ 'ଭକ୍ତମାନସ ବଦ୍ଧମନ୍ଦର, ଅରୁଣୋ–ସୁନ୍ଦରଙ୍କ ପାଦପଙ୍କଜ'କୁ ନିଜର ହୃଦୟ–ମନ୍ଦିରରେ ସଜାଡ଼ି ଥୋଇଛନ୍ତି ।

କେବଳ ସେତିକି ନୁହେଁ, କବି ବନମାଳୀଙ୍କ ଇଷ୍ଟଦେବ 'ନିର୍ବିକାର ନିତ୍ୟ ସତ୍ୟ ପୂର୍ଣ୍ଣାନନ୍ଦ' ହେବା ସଙ୍ଗେ ସଙ୍ଗେ 'ମାଧବ, ଦୈତ୍ୟାରି, କେଶବ, ବାମନ, ଶ୍ରୀରାମ, ବାସୁଦେବ ଓ ଅଚ୍ୟୁତ ରୂପେ ପଦ୍ୟାବଳୀରେ କୀର୍ତ୍ତିତ ହୋଇଛନ୍ତି । ତେଣୁ କବି ପଦ୍ୟାବଳୀର ବିଭିନ୍ନ ପ୍ରକରଣରେ ଉଚ୍ଛ୍ୱସିତ କଣ୍ଠରେ ଗାଇଛନ୍ତି—

"ଜୟ ଜଗନ୍ନାଥ ହେ, ଯଶୋଦା କୁମର !
ଶ୍ରୀମନ୍ତ ଶିରଶୃଙ୍ଗକ ନୂତନ ଜଳଧର ॥
× × ×
ନିତ୍ୟ ସତ୍ୟ ପୂର୍ଣ୍ଣାନନ୍ଦ ଗୋକୁଳ ରକ୍ଷ ଗୋବିନ୍ଦ ।

ପାଦ ଅରବିନ୍ଦେ ଭକ୍ତଭ୍ରମର ନକର ॥

× × ×

ଜଗନ୍ନିବାସ ହେ, ରଘୁବଂଶେ
ତୁମ୍ଭେ ହୋଇଣ ଜାତ ।

\+ + +

ଦୀନବନ୍ଧୁ ଦଇତ୍ୟାରି ଦୁଃଖ ନ ଗଲା ମୋହରି ।

\+ + +

ଆହେ ପ୍ରଭୁ କଳା ଶ୍ରୀମୁଖ,
କାଳ ଯାକ ଭଜି ନ ଗଲା ଦୁଃଖ ॥

\+ + +

ଉଠ ହୋ କାହ୍ନୁ କେଶବ ହରି,
ମୁକୁନ୍ଦ ମାଧବ ମୁରାରି" ।
ପ୍ରଭୃତି

ଆହୁରି ମଧ୍ୟ କବି ବନମାଳୀ ଉପାସ୍ୟ ଶ୍ରୀକୃଷ୍ଣ ଓ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଠାରେ ବିନୀତ ନିବେଦନ କରି ଦେହାନ୍ତରେ ତାଙ୍କର ପରିସ୍ଥିର ହେବାର କାମନା କରିଛନ୍ତି—

ମହିମା ହେ, ଏତିକି ମାଗୁଣି ମୋର ।
ମରଣ କାଳରେ ଦରଶନ ଦେବ
କଳାମୁଖ କଳାକର ।

\+ + +

ମଞ୍ଜୁଳ ବଡ଼-ସିଂହାର ବେଶ ଦେଖି
ମରୁଥିବି କଷ୍ଟ ଢାଳି ।

ମରୁଆ' ଦସୁଣାମାଳଆଙ୍କୁ ଏତେ
ଅଳକରେ ବନମାଳୀ ॥

+ + +

ବୋଲଇ ବନମାଳୀ ଶ୍ୟାମବନ୍ଧୁଙ୍କୁ ଘାଳ,
ସତେ ପିଣ୍ଡ ଚେକଦ ଏ ଜୀବ ଗୋ" ।

ଆହୁରି ମଧ୍ୟ କବି ବନମାଳୀ ନିଜ ପଦ୍ୟାବଳୀରେ ଶ୍ରୀକୃଷ୍ଣ ଓ ଶ୍ରୀ ଜଗନ୍ନାଥଙ୍କ ମଧ୍ୟରେ ଅଭେଦ କଳ୍ପନା କରି ବହୁପଦ ରଚନା କରିଛନ୍ତି । ସେଥିରୁ ବେଶ୍ ଧାରଣା କରିହୁଏ ଯେ, କବି ବନମାଳୀଙ୍କ ଇଷ୍ଟଦେବ ଶ୍ରୀକୃଷ୍ଣ ହୋଇଥିଲେ ହେଁ, ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଚତୁର୍ଦ୍ଧା ମୂର୍ତ୍ତି ମଧ୍ୟରେ ସେ ଈପ୍‌ସିତ ଦେବଙ୍କ ଦର୍ଶନ ପ୍ରତ୍ୟକ୍ଷ କରିଛନ୍ତି । ତେଣୁ ପଦ୍ୟାବଳୀରେ ଉଭୟ ନାମ ଶ୍ରୀକୃଷ୍ଣ ଓ ଶ୍ରୀଜଗନ୍ନାଥଙ୍କ ପ୍ରତି ସମାନ ଧରଣର ଗୁରୁତ୍ୱ ଦେଇ ଲେଖିଛନ୍ତି—

"ଆହେ ଜଗବନ୍ଧୁ,
ତୁମ୍ଭଙ୍କୁ ମୁହିଁ ନ ଜାଣେ ଆନ ଦେବତା ।
ଆପଣ କରୁଣା ଊଣା କଲେ
ଆଉ ନାହିଁଟି କେହୁ ରଖନ୍ତା ॥

+ + +

ଭଜ ଶ୍ରୀ ନନ୍ଦ ନନ୍ଦନରେ ମାନସ,
ଭଜ ଶ୍ରୀ ନନ୍ଦନନ୍ଦନ ॥
ସଜକଞ୍ଜନେତ୍ର ଧୃତ ବେଣୁ ବେତ୍ର
ଗୋପୀଙ୍କ ହୃଦଚନ୍ଦନ" ॥

+ + +

କବି ବନମାଳୀଙ୍କ ଦୃଷ୍ଟିରେ ଶ୍ରୀରାଧା ଜଣେ ସାଧାରଣ ନାୟିକା ରୂପେ ଚର୍ଚ୍ଚିତା ହୋଇ ନାହାନ୍ତି । ଆବଶ୍ୟ କବି 'ଗ୍ରାମ୍ୟରସ' ଶୀର୍ଷକ

କବିତାରେ କାବ୍ୟକ ନାୟିକାର ବର୍ଣ୍ଣନାରେ ବେଶ୍ ସଫଳତା ଅର୍ଜନ କରିଛନ୍ତି । ସେହି ଦୃଷ୍ଟିକୋଣରୁ ସେ ଶ୍ରୀ ରାଧାଙ୍କ ବର୍ଣ୍ଣନା କରିଥିଲେ ହେଁ, ତାଙ୍କୁ ଶ୍ରୀକୃଷ୍ଣ ପ୍ରାଣପ୍ରିୟା, କଣୋଷ୍ଣମଣି, କେମାଦେଈ, ସରସିଜନେଣୀ ବିଭହେମ ଗାଣୀ, ଶ୍ରୀବୃଷଭାନୁଦୁଲାଳୀ, ବାରିଜାକ୍ଷୀ, ସଜକଞ୍ଜ ନେଣୀ, ଗୋକୁଳଲଲନାକୁଳପାଳିକା, ସୁନା ପ୍ରତିମା, ନବବାଳୀ ପ୍ରଭୃତି ବିଶେଷଣରେ ଭୂଷିତ କରିଥିଲେ ହେଁ, ତାଙ୍କୁ ଆରାଧ୍ୟା ତଥା ଠାକୁରାଣୀର ଆସନରେ ବସାଇଛନ୍ତି । କବି ଗୋଟିଏ ସ୍ଥାନରେ ନିର୍ଲ୍ଲଜ୍ଜା ( ତୁ ଏଡ଼େ ନିର୍ଲ୍ଲଜ୍ଜା ଲାଜ ନାହିଁ ଆଜ ) ବୋଲି ସଖୀ ମୁଖରେ କହିଥିଲେ ହେଁ; କୃଷ୍ଣଗତ ପ୍ରାଣା, ବ୍ରଜସୁନ୍ଦରୀଙ୍କ ବନ୍ଦନରେ ବିଭକ୍ଷଣୀ, ଜଗନ୍ନାଥଙ୍କ ମନୋହାରିଣୀ ରୂପେ ବହୁ ସ୍ଥଳରେ 'ଠାକୁରାଣୀ'ର ଆସନରେ ବସାଇ, ନିଜେ ଅନୁଗତ ଭୃତ୍ୟରୂପେ ପରିଚର୍ଯ୍ୟାରେ ଲାଗିଯାଇଛନ୍ତି ।

"ବନମାଳୀ ଦାସ ଭଣି ଶୁଣି ରାଧେ **ଠାକୁରାଣୀ**
ସେ ମୋହନ ବଂଶୀପାଣି ତୁମ୍ଭର ଛଳେ ।

\+ + +

ବୋଲେ ବନମାଳୀ ଶୁଣ **ଠାକୁରାଣୀ**
ଜଳେ ଲୁଚିଥାନ୍ତି କି ।

\+ + +

ବନମାଳୀ ଦାସଭଣି,
ଶୁଣ ହେ ମୁରଲୀପାଣି
ତୁମ୍ଭଲାଗି **ଠାକୁରାଣୀ** ବସିଛନ୍ତି ଧ୍ୟାନକରି ॥

କେବଳ ସେତିକି ନୁହେଁ, ଠାକୁରାଣୀଙ୍କ ପାଦସେବାରେ ସର୍ବଦା ନିମଜ୍ଜିତ ହୋଇ ଭକ୍ତକବି ବନମାଳୀ ତାଙ୍କ ଠାରେ ନୈସର୍ଗିକ ଅଭିଳାଷ କରି ଆତ୍ମିକ ତୃପ୍ତି ଅନୁଭବ କରିଛନ୍ତି । ତାଙ୍କ ମାଗୁଣି ମଧ୍ୟରେ ଧନ, ଧାନ୍ୟ ଗୋପ, ଲକ୍ଷ୍ମୀ କନ୍ୟା ଧର୍ମ ଅର୍ଥ କାମ ମୋକ୍ଷାଦିର

ଭିକ୍ଷା ନାହିଁ । ଅଛି କେବଳ 'ନିଭୃତ ନିକୁଞ୍ଜ ଯୁଗଳଠାଣି'ର ଦର୍ଶନେଚ୍ଛା ଏବଂ କିଙ୍କରୀ ପଣେ ଶ୍ରୀ ଅଙ୍ଗ ସେବା ! ଦାସ୍ୟ ଭକ୍ତିର ଚରମ ସୋପାନରେ ଉପନୀତ ହୋଇ କବି ଶ୍ରୀରାଧାଙ୍କ ପ୍ରତି ଦୈନ୍ୟୋକ୍ତି ପ୍ରକାଶ କରି ଗାଇ ଉଠିଛନ୍ତି-

"ଶ୍ରୀରାଧେ ମୋର ଦଇନ୍ୟ ଏତେ ।
ସେବା ପରିସ୍ପର୍ଶ ହେବ ହେବ ଦେହାନ୍ତେ ।।

କରୁଣାମୟି ଗୋ ଅରୁଣାଧର ।
ମଣିବ ସଖୀଙ୍କ କିଙ୍କରୀ କର ।।

କୁଞ୍ଜ ଅବସାନେ ଥିବ ଗହଣେ ।
ନ ହୋଇବ ଗୁମ୍ଫ ଛଡ଼ା ମୁଁ କ୍ଷଣେ ।।

ପହଣ୍ଡମଣି ନିଜକର୍ଷ ପଣେ ।
ଆଳୀଗଣେ ମୋତେ ଗଣିବ ଜଣେ ।।

ରବିପୂଜା କାଳେ ବେଣିବ ସଙ୍ଗେ ।
ଅଙ୍ଗରାଗ ଲେପିବାକୁ ଶ୍ରୀଅଙ୍ଗେ ।।

ଉଚିବା ପାଇଁକି ବେଶ ବିଧାନ ।
ମୋ ପ୍ରତି ହେବ ଦିବ୍ୟ ଅବଧାନ ।।

ନିଭୃତ ନିକୁଞ୍ଜେ ଯୁଗଳଠାଣି ।
ଦରଶନେ ହେବ ମନଫୁଲଣି ।।

କାଳୁସ୍ତେ କହେ ବନମାଳୀ ଦାସ । ଏ ବିନୁ ନାହିଁ ଆନ ଅଭିଳାଷ" ।।

କବି ବନମାଳୀ ପୂର୍ବାଶ୍ରମରେ ଥିବାବେଳେ ଆଦିରସାତ୍ମକ ଗ୍ରାମ୍ୟ ଗୀତ ରଚନାରେ ମନ ବଳାଇଥିଲେ । କିନ୍ତୁ ସନ୍ନ୍ୟାସ ଗ୍ରହଣ କରିବା ପରେ ତାଙ୍କର ସେହି ଶୃଙ୍ଗାରୀ ମନୋବୃତ୍ତିକୁ ଶ୍ରୀରାଧା କୃଷ୍ଣଙ୍କ କେଳିକୁତୂହଳ ବର୍ଣ୍ଣନାରେ ନିମଜ୍ଜିତ କରାଇ, ଭକ୍ତକବି ସୁରଦାସ, ଚଣ୍ଡୀଦାସ, ଗାନକୃଷ୍ଣ ପ୍ରଭୃତିଙ୍କ ପରମ୍ପରାର ଅନୁସରଣ କରିଛନ୍ତି ।

କବି ସୂରଦାସଙ୍କ 'ଭ୍ରମରଗୀତ' ଭାରତୀୟ ସାହିତ୍ୟର ଭକ୍ତି ଭାବାପ୍ଳୁତ ବିରହ ଗୀତିକା ମଧ୍ୟରେ ଶୀର୍ଷସ୍ଥାନ ଅଧିକାର କରେ । ସୂରଦାସଙ୍କ ଶ୍ରୀକୃଷ୍ଣ ବିରହିଣୀ ଗୋପୀମାନଙ୍କୁ ପ୍ରବୋଧନା ଦେବା ନିମିତ୍ତ ଉଦ୍ଧବଙ୍କୁ ଦୂତରୂପେ ଗୋପପୁରକୁ ପଠାଇଛନ୍ତି । ଉଦ୍ଧବ ଗୋପୀମାନଙ୍କୁ ପ୍ରଥମେ ଜ୍ଞାନୋପଦେଶ ଦେବାକୁ ଚେଷ୍ଟାକରି; ସେମାନଙ୍କ ପ୍ରେମାନୁଗାଭକ୍ତି ଆଗରେ ମୁଣ୍ଡ ନୁଆଁଇ ଦେଇଛନ୍ତି । ଏହି ପ୍ରକରଣରେ ସୂରଦାସଙ୍କ 'ଭ୍ରମର ଗୀତ' ପ୍ରତ୍ୟେକ ଧରଣର ପାଠକ ହୃଦୟରେ କରୁଣରସର ଅପୂର୍ବ ମୂର୍ଚ୍ଛନା ତୋଳି, ଭକ୍ତ ମଣ୍ଡଳୀକୁ ଦାସ୍ୟ ଭକ୍ତିର ଉନ୍ନତ ସୋପା-ନରେ ଉପନୀତ କରାଇଥାଏ ।

କିନ୍ତୁ କବି ବନମାଳୀ ସେହି ବିରହଗାଥାକୁ ଆଉରି ଟିକିଏ ମଧୁମୟ ତଥା ଉପାଶ୍ରିତ କରିବା ପାଇଁ ଶ୍ରୀରାଧାଙ୍କ ପକ୍ଷରୁ ବୃନ୍ଦାଙ୍କୁ ଶ୍ରୀକୃଷ୍ଣଙ୍କ ନିକଟକୁ ପଠାଇଛନ୍ତି ଶ୍ରୀକୃଷ୍ଣ ଗୋପପୁରରୁ ମଥୁରାକୁ ଯିବାପରେ, କଂସବଧ, ରାଜ୍ୟବ୍ୟବସ୍ଥା, ଜରାସନ୍ଧର ଆକ୍ରମଣ ପ୍ରତି ସଜାଗ ହେବା ପ୍ରଭୃତି ବହୁ ପ୍ରକାର ପ୍ରଶାସନିକ କାର୍ଯ୍ୟରେ ବ୍ୟସ୍ତ ରହିଯାଇଛନ୍ତି । କିନ୍ତୁ ବ୍ରଜପୁରର ଗୋପାଙ୍ଗନା, ଶ୍ରୀମତୀ ରାଧା ନିଜ ପ୍ରେମସୌଧ ଉପରେ ଅକାଳ ବଜ୍ରପାତ ଫଳରେ ଏକା ବେଳେକେ ମ୍ରିୟମାଣା ହୋଇ ଉଠିଛନ୍ତି । କୃଷ୍ଣବାଞ୍ଛିତା ବ୍ରଜେଶ୍ୱରୀ ରାଧାଙ୍କ ନୟନରେ ସେହି ପ୍ରାଣପ୍ରିୟଙ୍କ ଲାବଣ୍ୟପ୍ରତିମା, ମୋହନମୂରତି ଅନବରତ ନାଚି ଉଠୁଛି । ତେଣୁ ବିରହ ବାଣରେ ନିଷ୍ପେଷିତା ହୋଇ ବୃନ୍ଦାବତୀଙ୍କୁ ଦୂତୀରୂପେ ପଠାଇବାର ଯେଉଁ ମନୋଜ୍ଞ କଳ୍ପନା କବି ବନମାଳୀଙ୍କ ଚିନ୍ତାଧାରାରୁ ନିଃସୃତ ହୋଇଛି ତାର ଭାବ ସୌନ୍ଦର୍ଯ୍ୟ ଅତୁଳନୀୟ । କବି ବନମାଳୀ ମଧ୍ୟ ପଦ୍ୟାବଳୀରେ ସେହି ଭାବସୌନ୍ଦର୍ଯ୍ୟକୁ ମୂର୍ତ୍ତିମନ୍ତ କରି ଆଙ୍କିବାର ଅଭିଳାଷରେ ସରଳ, ସାବଲୀଳ ପଦଯୋଜନା କରି, ପଂକ୍ତିଗୁଡ଼ିକୁ ଆହୁରି କରୁଣ ତଥା ଗମ୍ଭୀର କରିଦେଇଛନ୍ତି—

"ମୋହନ, କହିଲେ କ ହେବ ଆଉ ।
ଦିନକୁ ଦିନ ହେ ବଳ ପଡ଼ିଲଣି;
ଜଶୋଗୀ ବିରହ ଦାଉ ।।

ଗଲେ ଯମୁନାକୁ                    ନୀର ଆଣିବାକୁ
ନୀର ଭଣ ନେଇ ଯୁକେ ।
କଦମ୍ବମୂଳକୁ                    ଭୃଙ୍ଗି ପୁଣି ତାକୁ
କି ପୃଚ୍ଛଇ ଅନୁରାଗେ ॥

×          ×          ×

କରମକୁ ନନ୍ଦେ                    କେଶ ହି ନ ବାନ୍ଧେ
ବେଶରେ ନାହିଁ ଆଦର ।
ଦରକଣ୍ଠୀ ଗୋପୀ                    ଦରପଦ୍ମ ହୋଇ
ଢଳ ପଡ଼େ ମହୀପର ॥

ଶ୍ରୀକୃଷ୍ଣଙ୍କ ଅତୀତର ସବୁ ସ୍ନେହ ସୋହାଗ ଏବଂ ମଥୁରାରେ ତାଙ୍କର ଆଚରଣ ସମ୍ବନ୍ଧରେ ସ୍ମୃତିର ଶ୍ରୀମତୀଙ୍କ ଦୂତୀ ବୃନ୍ଦାବତୀ ନନ୍ଦନାଗରଙ୍କ ପ୍ରାଣରେ ଆଘାତ ଦେଇ ଭଳି କହନ୍ତି—

ହେ ମୋହନ,
ପାସୋରି ଦେଲ କି ମନ ।
ଧେନୁ ପଛେ ବେନୁ ବାଇ ଆସିବାର ସଖୀମେଳେ ବୃନ୍ଦାବନ ।'
କି ନକଲ ସତେ କୁବୁଜା ବନ୍ଧୁ ହେ ।
ରାଧା ପ୍ରେମ ଋଣୀ ହୋଇ ।
ମଥୁରାରେ ସାଧୁପଣ ଦେଖାଉଛ,
ବରଜ ବଧୂ ମାଧୋଇ ॥
ଗୋପୀନାଥ ବୋଲି କପଟ କହିବ,
ଗୁଡ଼ ତ ଆସିଛି ଗୋପ ।
ଏବେ ସେ ମଥୁରାନାଥ ବୋଲଉଛ,
ଜାଣି ସେ ହିଧଙ୍ଗ ରୂପ" ॥

କେବଳ ଶ୍ରୀ କଣୋଗ୍ର ମଣି ଦୃଷ୍ଟ ବୃନ୍ଦାବଣି ନୁହେଁ, କବ ବନମାଳୀ ନଜେ ମଧ୍ୟ ନଜର ଅସ୍ତିତ୍ୱ ଭୁଲି ଦିବା ସଙ୍ଗେ ସଙ୍ଗେ ଭକ୍ତିକ ପ୍ରେମରେ ବହ୍ୱଳ ହୋଇ, ଶ୍ରୀମଙ୍କ ପରେଶ୍ୱରିକା ରୂପେ, ଗୋପକୁ ଫେରିଯିବା ଲାଗି ରସିକ ମୋହନଙ୍କ ଆଗରେ ନବେଦନ କରିଛନ୍ତି ।

"ବନମାଳୀ ଭଷେ ନଟବର ବେଶେ,
ଗୋପେ ଗ୍ଭଲ ବଙ୍କା ଆଖି ।

× × ×

ବନମାଳୀ ବୋଲେ ନନ୍ଦନନ୍ଦନ,
ଗୋପେ ଚଳ ରାଧା ହୃଦଚନ୍ଦନ" ।।

ଅବଶ୍ୟ କବ ସୁରଦାସ ଅନୁରୂପ ପ୍ରକରଣରେ ଆତୁର ଚିକଏ ଦଢଦମିଶା ସ୍ୱରରେ ପ୍ରଭୁଙ୍କ ପଦାରବନ୍ଦରେ ଅଳି କରିଛନ୍ତି—

"ନାଥ, ଅନାଥନ କା ସୁଧି ଲଜୈ
ଗୋପୀ ଗ୍ୱାଲ ଗାଇ ଗୋସୁତ ସବ ଯାନ ମଲାନ ଦନ ହ୍ୱ ଦନ ଛୀଜୈ ।
ଚରନ କମଲ ଦରସନ ନବକନବକା,
କରୁନାସିନ୍ଧୁ ଜଗତଜସ ଲଜୈ ।
ସୁରଦାସ ପ୍ରଭୁ ଆସ ମିଲନ କା,
ଏକବାର ଆଓତ ବ୍ରଜ କାଜୈ" ।।

(ସୁର ସାଗର)

କବ ବନମାଳୀ ଜୀବନର ଶେଷ ଯାମରେ କେତୋଟି ନର୍ଗୁଣଭକ୍ତି ସମ୍ବନ୍ଧୀୟ ପଦ୍ୟରଚନା କରିଛନ୍ତି । ତାଙ୍କର ସେହି ପଦଗୁଡ଼ିକୁ ମୁଖ୍ୟତଃ ସଂସାରର ଅନତ୍ୟତା, ଅସାରତା ତଥା କ୍ଷଣଭଙ୍ଗୁରତାର ଉପଲବ୍ଧିରୁ ସ୍ୱାନୁଭୂତର ନର୍ଯ୍ୟାସ ବୋଲି କୁହାଯାଇ ପାରେ । ସମସାମୟିକ ସମାଜରେ ଜନସାଧାରଣଙ୍କ ଗୀତ, ମତ, ଆଗ୍ରହ, ବଗ୍ରହରେ ତାଙ୍କର ସାଧକମନ ନିଶ୍ଚିତ ଭାବରେ ଆହତ ହୋଇଛି । ଶାସନଗତ ବିଶୃଙ୍ଖଳା, ମରହଟ୍ଟା

ବର୍ତ୍ତମାନଙ୍କର ନିର୍ଘୃଣ ଜନସାଧାରଣଙ୍କ ଉପରେ ଅତ୍ୟାଚାର, ଆତ୍ମରକ୍ଷା ତଥା କୁଳ କୁଟୁମ୍ବ ରକ୍ଷାଲାଗି ଜନସମ୍ବଳର ସ୍ୱାର୍ଥପରତା ବନମାଳୀଙ୍କ ସାତ୍ତ୍ୱିକ ପ୍ରାଣରେ ତୀବ୍ର ବେଦନା ଆଣି ଦେଇଛି । ତେଣୁ ସେ ସନ୍ଥ କବି କବୀରଦାସଙ୍କ ପରି ପଦ୍ୟାବଳୀ ମାଧ୍ୟମରେ ଗଣଚେତନା ସୃଷ୍ଟି କରିବା ଅଭିପ୍ରାୟରେ କବିତା ରଚନାର ପଦ୍ଧତି ପରିବର୍ତ୍ତନ କରିଛନ୍ତି ।

"ମନ ଆନରେ,
ନ ରସି ହୁଅ ସାବଧାନରେ ।।
କଷ୍ଟପ୍ରାବିଷକୁ ଗଦ ଭକ୍ତଜନ ପ୍ରମୋଦ
ନନ୍ଦନନ୍ଦନ ପଦ ଗାନରେ ।
ତ୍ୟଜ କୁସଙ୍ଗ ସଙ୍ଗ କୁମତି ଷଡ଼ଭଙ୍ଗ ।
ତ୍ୟଜ ଶରୀରୁ ଅହଙ୍କାର ରେ" ।।

ସଂସାରକ ମାୟା ମୋହ ରୂପକ ଜଞ୍ଜାଳରେ ଘାରି ହୋଇ ପ୍ରାଣୀ ମାନେ ଜୀବନର ଶାଶ୍ୱତ ଚିନ୍ତାକୁ ଭୁଲି ଯାଉଛନ୍ତି । ଦାରା, ପୁତ୍ର ଭାଇବନ୍ଧୁ ସୋଦର ତଥା ଧନ ରତ୍ନ ବାଡ଼ି ବୃତ୍ତି ଚିନ୍ତାରେ ସେମାନେ ଅହରହ ଧନ୍ଦି ହୋଇ, ଭବସାଗରରୁ ପାରି ହେବାର ଉପାୟ ସମ୍ବନ୍ଧରେ ଥରେ ହେଲେ କେବେ ଚିନ୍ତା କରୁନାହାନ୍ତି । ତେଣୁ ଭକ୍ତକବି ବନମାଳୀ ଜନସାଧାରଣଙ୍କୁ ଉପଯୁକ୍ତ ସନ୍ମାର୍ଗ ପ୍ରଦର୍ଶନ କରିବା ଉଦ୍ଦେଶ୍ୟରେ କେତୋଟି ପଦ୍ୟାବଳୀ ରଚନା କରିଛନ୍ତି ।

"ମନବାଇ, ଛାଡ଼ ପାରୁକ ବିଷୟ ଗଞ୍ଜାଇ ।
ଦାରାପୁତ୍ର ପରିବାର ଯାବତ ବନ୍ଧୁ ସୋଦର,
ଧନ ରତ୍ନ ଅଳଙ୍କାର ବାଡ଼ି ବୃତ୍ତି ଯେ ତୋହର
ସବୁମିଛ କହୁ ନେବୁ ନାହିଁରେ ।।
ଲଗିଛି ମାୟାର ହାଟ କାରବାର ମୋହ ନାଟ
ବେଳଥାଉଁ ଦେଖ ବାଟ ତୋ ଗୃହଦଉଡ଼ କାଟ
ଆଶ୍ରାଧର ଦିବ୍ୟଗତି 'ପାଇଁରେ" ।।

ଷୋଡ଼ଶ ଶତାବ୍ଦୀର ଶ୍ରେଷ୍ଠ ସାଧକକବି ତଥା ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟର ଜନ୍ମଦାତା ଶାନ୍ତନାୟକ ପଞ୍ଚସଖା ନିଜ ନିଜର ରଚନାରେ ଗୁରୁସେବା ପ୍ରତି ବିଶେଷ ଗୁରୁତ୍ୱ ଆରୋପ କରିଥିଲେ । ଅବଶ୍ୟ ଏ'ପ୍ରକାର ଚିନ୍ତାଧାରା ସଂସ୍କୃତ ସାହିତ୍ୟରୁ ଆସିଛି ।

"ଗୁରୁର୍ବ୍ରହ୍ମା ଗୁରୁର୍ବିଷ୍ଣୁଃ ଗୁରୁଦେବୋ ମହେଶ୍ୱରଃ ।
ଗୁରୁଃ ସାକ୍ଷାତ୍ ପରଂବ୍ରହ୍ମ ତସ୍ମୈ ଶ୍ରୀଗୁରବେ ନମଃ'' ॥

ଭାରତୀୟ ତାନ୍ତ୍ରିକମାନେ ଅଧିକ ଟିକିଏ ଅଗ୍ରସର ହୋଇ ଗୁରୁଙ୍କୁ ଶିବଙ୍କ ଠିକ୍ ସମାନ ଆସନରେ ବସାଇଛନ୍ତି । ସେମାନଙ୍କ ମତରେ—' ଶିବ ରୁଷ୍ଟ ହେଲେ ଗୁରୁଦେବ ଦିବ୍ୟାଞ୍ଜନ ପ୍ରଦାନ ଦ୍ୱାରା ସେହି ପାପରୁ ମୁକ୍ତ ହୋଇ ପାରନ୍ତି; କିନ୍ତୁ ଗୁରୁ ରୁଷ୍ଟ ହେଲେ ପରିତ୍ରାତା ଜଗତରେ କେହିନାହିଁ' ।

ସନ୍ଥକବି କବୀର ଦାସ ମଧ୍ୟ ଗୁରୁଙ୍କୁ ଗୋବିନ୍ଦଙ୍କ ଠାରୁ ଶ୍ରେଷ୍ଠ ଆସନରେ ବସାଇଛନ୍ତି । ତାଙ୍କ ମତରେ—'ଯଦି ଗୁରୁ ଓ ଗୋବିନ୍ଦ ଏକାଠିକେ ଆସି ସମ୍ମୁଖରେ ଉପସ୍ଥିତ ହୁଅନ୍ତି, ତେବେ ଭକ୍ତର କର୍ତ୍ତବ୍ୟ ହେଉଛି— ପ୍ରଥମେ ଗୁରୁଙ୍କ ବନ୍ଦନା କରିବା । ସେହି ଗୁରୁଙ୍କୁ ଧନ୍ୟବାଦ, ଯେକି ଗୋବିନ୍ଦଙ୍କୁ ପାଇବାର ଉପାୟ ସହଜରେ ଶିଖାଇ ଦେଇ ପାରନ୍ତି । ଆମ ଓଡ଼ିଆ ସାହିତ୍ୟର ପଞ୍ଚସଖାମାନେ ମଧ୍ୟ ଗୁରୁଙ୍କୁ କମ୍ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଦେଇନାହାନ୍ତି । ସେମାନେ ଗୁରୁଭକ୍ତି, ଗୁରୁସେବା ବ୍ୟତିରେକେ ସାଧନାରେ ସିଦ୍ଧି ହୋଇପାରେ ନାହିଁ ବୋଲି ମତଦିଅନ୍ତି ।

"କହେ ଯଶୋବନ୍ତ ଦାସ ଶ୍ରୀଗୁରୁପଦରେ ।
ଏହା ଭେଦି ଭଜନ କରିବ ଏକାକ୍ଷରେ ॥

+ + +

ଷଡ଼ ଗୃହକର ବିନ୍ଦୁ ସୃଜନ ।
ଗୁରୁସେବା କରି ବୁଝ ଏମାନ ॥

+ + +

ବୟସ ଗଲାଣି ତୋର,
ନ ଭଜୁ ଗୁରୁପୟର ।
ନିଷ୍ଟେଁ ହେବୁ ନାରଖାଇ,
କହନ୍ତ ଅନନ୍ତ ଶିଶୁ" ॥

(ଓଡ଼ିଆ ଭଜନ, ପ୍ରଥମଭାଗ)

କବି ବନମାଳୀ ପ୍ରାଚୀନ କବି ପରମ୍ପରାର ଅନୁସରଣରେ ଗୁରୁ, ବିଶେଷତଃ ବୈଷ୍ଣବ ଗୁରୁଙ୍କ ପ୍ରତି ଶ୍ରଦ୍ଧାଭକ୍ତି ଅର୍ପଣ କରିଛନ୍ତି ।

ଶ୍ରୀଗୁରୁ ବୈଷ୍ଣବେ ଶୁଦ୍ଧ ଭକତି ଅରଜରେ ।
ଶିରେ ବୋଳ ହୁଅ ନିଜେ ସାଧୁପଦ-ରଜ ॥
ନ ଝୁଣ୍ଟିବୁ ମେଣ୍ଟିଯିବ ଅଙ୍ଗୁଠୋ ଦରଜରେ ।

\+ + +

ଦମ୍ଭ ଅଭିମାନ ଗର୍ବ ସମୂଳେ ବରଜରେ ॥

× × ×

ମାନବଜନା ପୁରୁଦତ୍ତ ଆଦେଶ । ଆନହଙ୍ଗତି କ ହୃଦରେ ନିବେଶ" ॥

କବି ବନମାଳୀ ତାଙ୍କ ପଦ୍ୟାବଳୀରେ ଜ୍ଞାନମିଶ୍ରା ଭକ୍ତି ସମ୍ବନ୍ଧୀୟ ଯେଉଁ କବିତା ରଚନା କରିଛନ୍ତି, ସେଥିରେ ସଂସାର ସାଗରରୁ ଉଦ୍ଧାରିବା ଲାଗି ନିର୍ଗୁଣ ସ୍ୱରୂପୀ ଶ୍ରୀଜଗନ୍ନାଥଙ୍କୁ ଐକାନ୍ତିକ ଭାବରେ ଭଜନ କରିବା ଲାଗି ଉପଦେଶ ଦେଇଛନ୍ତି । ମନୁଷ୍ୟର ମନମଧ୍ୟରେ ଯମଯନ୍ତ୍ରଣାର ଯେଉଁ ଭୟ ଉଙ୍କିମାରୁଛି, ତାହା ମଧ୍ୟ ନୀଳାଦ୍ରିନାୟକ, ଭବବନ୍ଧନାଶୟ, ଭୁବନୈକବନ୍ଧୁ, ଶରଣାଗତପାଳକ ଜଗନ୍ନାଥ ଅଥବା ବସ୍ତ୍ରଗୋଧନ-ଶୀଳକ ଶ୍ରୀକୃଷ୍ଣଙ୍କ ପଦାବ୍ଜ ସେବାରେ ଦୂରୀଭୂତ ହୋଇ ପାରିବ ବୋଲି ଜନସାଧାରଣଙ୍କୁ ସ୍ପଷ୍ଟ ଉପଦେଶ ଦେଇଛନ୍ତି—

“ଆଜନ୍ମ ପାତକ ମାର୍ଜନା କରଇ
ହେଉ ଯୁଗଳ ଚରଣ ।।

+ + +

ଭଜମନ ଆରେ ଭଜମନ !
ଭଜନେ ନ କର ଅବହେଳା,
ଭବସାଗରେ ବୁଡ଼ାନା ଭେଳା ।
ଶଙ୍କର-ନନ୍ଦନ ନ କରୁ ବନ୍ଦନ,
ଶିବଗ୍ରାହ୍ମୀ ପଦେ ଲୟୁ ମେଳା ।।
ଭୟଙ୍କର କାଳ କବଳରୁ,
ଉଦ୍ଧରିବୁ ଯେବେ ଇଚ୍ଛା କରୁ ।
ଭବବନ୍ଧମାସ୍ତୁ ନୀଳାଦ୍ରିନିଳୟନାଥଙ୍କୁ
କଦା ନ ଅନୁସରୁ ।।

× × ×

ଯତନେ ଶ୍ରୀଜଗବନ୍ଧୁ ନାମ ଭଜରେ ପାଗଳମନ ।
ଯମଦଣ୍ଡରୁ ତୁ ମୁକୁଳିଯିବୁଟି ଅନ୍ତଃକାଳେ ନୋହିବ ଛନ୍ନ ।

× × ×

ଆରେ ମୂଢ଼ ମନ,
ସଦା ପାନକର ନାମରସାୟନ ।
ଘୁଞ୍ଚିଯିବାପାଇଁ ଭବବ୍ୟାଧି,
ହରିନାମ ମହାମହୌଷଧି ।।
ତ୍ରିତାପ ଯନ୍ତ୍ରଣା ହୋଇଯିବ ଊଣା,
କରୁଥିଲେ ନିତ୍ୟେ ତୁ ସେବନ” ।।

ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, କବି ବନମାଳୀ ଜୀବନର ଅନ୍ତିମ ଦଶାରେ ନାମ ସଂକୀର୍ତ୍ତନ, ଗୁରୁସେବା, ନିର୍ଗୁଣବନ୍ଧୁ ଶ୍ରୀଜଗନ୍ନାଥ ତଥା

ସର୍ବାନ୍ତଃର୍ଯାମୀ,' ବ୍ରହ୍ମାଣ୍ଡ ସ୍ୱାମୀ, ପୂର୍ଣ୍ଣାନନ୍ଦ, ସନାତନଙ୍କ ନାମ ଭଜନ ଉପରେ ଗୁରୁତ୍ୱ ଦେଇ ପଦ୍ୟାବଳୀ ରଚନା କରିଥିଲେ । ତାହାହିଁ ଥିଲା ତାଙ୍କ ଜୀବନର ଅନ୍ତିମ ଅଭିଳାଷ !

କବି ବନମାଳୀଙ୍କ ପଦ୍ୟାବଳୀ ଗୁଡ଼ିକ ରୀତିକାଳୀନ ଶୈଳୀପରି ଅତ୍ୟଧିକ ଶୃଙ୍ଗାରିକ ବର୍ଣ୍ଣନା ପୂର୍ଣ୍ଣ ବୋଲି କେତେକ ମତ ଦେଇଥାନ୍ତି । କିନ୍ତୁ ଭାରତୀୟ କୃଷ୍ଣଭକ୍ତିଧାରା-ମୂଳକ ସାହିତ୍ୟର ସର୍ବେକ୍ଷଣ କଲେ, ଏ ପ୍ରକାର ଧାରଣା ଅମୂଳକ ବୋଲି ସ୍ପଷ୍ଟ ମତ ଦେଇହୁଏ ।

ଗୀତ ଗୋବିନ୍ଦ ଟୀକା 'ସର୍ବାଙ୍ଗସୁନ୍ଦରୀ' ରେ ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର ଟୀକାକାର ନାରାୟଣ ଦାସ ଗୀତଗୋବିନ୍ଦ କାବ୍ୟରେ ବର୍ଣ୍ଣିତ ଦେବାଦି ବିଷୟକ ରତିର ପ୍ରଶଂସା କରି ଲେଖିଛନ୍ତି—

"ଶୃଙ୍ଗାରୀ ଚେତ୍ କବିଃ କାବ୍ୟଂ
ଜାତଂ ରସମୟଂ ଜଗତ୍ ।
ସ ଏବ ଚେଦଶୃଙ୍ଗାରୀ
ନୀରସଂ ସର୍ବମେବ ତତ୍ ॥
ରାଧାମାଧବୟୋଃ କେଳି ଖ୍ୟାପନେନ କବେ ରତିରିୟଂ
ଦେବବିଷୟା ରତି ର୍ଭାବରୂପା ଧ୍ୱନିତା । ତଥାଚ—
ରତି ର୍ଦେବାଦି ବିଷୟା
ଭାବ ଇତ୍ୟଭିଧୀୟତେ"॥

କେବଳ ସେତିକି ନୁହେଁ, ଜୟଦେବ ଗୀତଗୋବିନ୍ଦର ବହୁସ୍ଥଳରେ ଶ୍ରୀରାଧାକୃଷ୍ଣଙ୍କର 'ରତିକେଳିକଳାବିଳାସ' ଏପରି ଭାବରେ ବର୍ଣ୍ଣନା କରିଛନ୍ତି ଯେ, ସେ ତୁଳନାରେ ବନମାଳୀ ଆଦୌ ବିଶେଷ କିଛି ଆଦିରସାତ୍ମକ ବର୍ଣ୍ଣନା କରି ନାହାନ୍ତି । ଗୀତଗୋବିନ୍ଦର ଦ୍ୱାଦଶସର୍ଗ ଶେଷରେ କବି ଜୟଦେବ ଶୃଙ୍ଗାରରସସିକ୍ତ ସ୍ୱକାବ୍ୟର ପ୍ରଶଂସା କରି କହିଛନ୍ତି—

"ଯଦ୍ ଗାନ୍ଧର୍ବକଳାସୁ କୌଶଳମନୁଧ୍ୟାନଂ ଚ ଯଦ୍‌ବୈଷ୍ଣବଂ
ଯଚ୍ଛୃଙ୍ଗାର ବିବେକତତ୍ତ୍ୱମପିଯତ୍ କାବ୍ୟେଷୁ ଲୀଳାୟିତମ୍ ।

ତତ୍ ସର୍ବଂ ଜୟଦେବପଣ୍ଡିତକବେଃ କୃଷ୍ଣୈକତାନାତ୍ମନେ
ସାନନ୍ଦା ପରିଶୋଧୟନ୍ତୁ ସୁଧୀୟଃ ଶ୍ରୀଗୀତଗୋବିନ୍ଦତଃ" ।।

କେବଳ ଜୟଦେବ କାହିଁକି, ପରବର୍ତ୍ତୀ କାଳର କବିଚନ୍ଦ୍ର ରାୟ ଦିବାକର ମିଶ୍ର 'ଅଭିନବ ଗୀତଗୋବିନ୍ଦ' ( ଗଜପତି ପୁରୁଷୋତ୍ତମ ଦେବଙ୍କ ନାମରେ ଭଣିତ ), ରାୟ ରାମାନନ୍ଦ ପଟ୍ଟନାୟକ 'ଶ୍ରୀଜଗନ୍ନାଥ ବଲ୍ଲଭ ନାଟକ', କବୀନ୍ଦ୍ର ରଘୁତ୍ତମଙ୍କର 'ମୁକୁନ୍ଦବିଳାସ' ଅଗ୍ନିଚିତ୍ ନିତ୍ୟାନନ୍ଦ 'ଶିବଲୀଳାମୃତ' ଓ ଶ୍ରୀକୃଷ୍ଣଲୀଳାମୃତ', ରୂପଗୋସ୍ୱାମୀ ବିଦଗ୍ଧମାଧବ ନାଟକ ପ୍ରଭୃତିରେ ଉତ୍କଟଶୃଙ୍ଗାର ବର୍ଣ୍ଣନା ଶ୍ରୀରାଧାକୃଷ୍ଣଙ୍କ କେଳୀ ନାମରେ କରିଥିବାର ପ୍ରମାଣ କମ୍ ପରିଦୃଷ୍ଟ ହୁଏନାହିଁ ।

ଓଡ଼ିଆ ସାହିତ୍ୟର ଧୁରୀଣ କବି, ବନମାଳୀ ଦାସଙ୍କ ଆଦର୍ଶସ୍ଥାନୀୟ କବିଚନ୍ଦ୍ର କୃଷ୍ଣଦାସ, କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ, କବି ଦାଶରଥି ଦାସ ପ୍ରଭୃତି ସୁଦୀର୍ଘକାବ୍ୟରେ ସୀତାରାମ, ରାଧାକୃଷ୍ଣଙ୍କ ଲୀଳା ବର୍ଣ୍ଣନା କରିବାକୁ ଯାଇ ଶୃଙ୍ଗାର ରସାଶ୍ରିତ ବିଭିନ୍ନ ବର୍ଣ୍ଣନା କରିଥିବାର ଦେଖାଯାଏ । କବି ବନମାଳୀ ସେହି ପ୍ରାଚୀନ ପରମ୍ପରାର ଅନୁସରଣରେ ଶ୍ରୀରାଧାକୃଷ୍ଣ ଲୀଳାର ଅଳ୍ପ କେତୋଟି ମାତ୍ର ପଦ୍ୟାବଳୀରେ ଶୃଙ୍ଗାରରସର ପୁଟଦେଇ କବିତାର ଅଭିନବତ୍ୱ ଫୁଟାଇବାରେ ପ୍ରୟାସ କରିଛନ୍ତି ।

ସଂସ୍କୃତ ଅଳଙ୍କାର ଶାସ୍ତ୍ରରେ ଅଛି "ଆଦୌ ରାଗଃ ସ୍ତ୍ରିୟାବାଚ୍ୟଃ, ପୁସଃ ପଶ୍ଚାତ୍ତଦିଙ୍ଗିତୈଃ" । ଅର୍ଥାତ୍ ଗୁଣଶ୍ରବଣ, ଚିତ୍ରଦର୍ଶନ, ସାକ୍ଷାତ୍ ଦର୍ଶନ ପ୍ରଭୃତି ଦ୍ୱାରା ନାରୀର ହୃଦୟରେ ପ୍ରଥମେ ପୁରୁଷ ପ୍ରତି ଅନୁରାଗ ଜାତ ହୋଇଥାଏ । ତେଣୁ ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା, ଅଦ୍ଭୁତକର୍ମ ତଥା ମଦନମନୋହର ରୂପଲାବଣ୍ୟରେ ବିମୁଗ୍ଧା ହୋଇ ଶ୍ରୀରାଧା ତାଙ୍କ ପ୍ରତି ଆକୃଷ୍ଟା ହୋଇଥିଲେ, ଶ୍ରୀରାଧାଙ୍କ ଦର୍ଶନାନୁରାଗକୁ ବହୁ କବି ବିଭିନ୍ନ ଭାବରେ ବର୍ଣ୍ଣନା କରିଛନ୍ତି । କବି ବନମାଳୀ ମଧ୍ୟ ଜଣେ ଆଦର୍ଶ ଭକ୍ତ ଭାବରେ ତଥା ଭକ୍ତିକ କଳ୍ପନାରେ ଶ୍ରୀରାଧାଙ୍କ ପାଖେ ପାଖେ ଥାଇ ମୁଗଧ କଣ୍ଠରେ ଗାଇଛନ୍ତି—

"କହନ୍ତେ ସଜନି, ସେ କଦମ୍ବମୂଳେ କେ ସେ ।
ନବୀନ ନୀରଦଚନ୍ଦ୍ର କେଉଁ ଶୋଭା ବହେ ॥
କିଶୋର ବୟସ ତାର          ଛବି ବହେ ମନୋହର
ନାଗରୀଙ୍କ ଚିତ୍ତଚୋର ନଟବର ବେଶେ ।

×          ×          ×

ବନମାଳୀ ଦାସ ଭଣି          ସେ ପରା ମୁରଲୀପାଣି
ପରତେ ନହେଲେ ତାଠାରେ ଜାଣିବୁ ତୁ ଯେ ସେ" ।

ଶ୍ରୀକୃଷ୍ଣଙ୍କ ବାଙ୍କଚାହାଣିରେ ଶ୍ରୀରାଧା ମଦନବାଣରେ ଉତ୍ପୀଡ଼ିତା ହୋଇ ଉଠିଛନ୍ତି । କାମର ଦଶଦଶା ମଧ୍ୟରୁ ତାଙ୍କର ଗୁଣକଥନ ଅବସ୍ଥା ଜାତ ହୋଇଛି । ସେ ସଖୀମାନଙ୍କ ଆଗରେ ଶ୍ୟାମଚନ୍ଦ୍ରଙ୍କର ଯୁବାନାସା-ଦମ୍ଭଛଡ଼ା ରୂପର ପ୍ରଶଂସା କରି ତନ୍ମୟ ହୋଇ ଉଠିଛନ୍ତି । ଯେଉଁବେଳେ ସେ କାମଦଶାରେ ପୀଡ଼ିତା ସେତେବେଳେ ବାହ୍ୟଚେତନା, ଲୌକିକ ନିନ୍ଦା ପ୍ରଶଂସାକୁ ପାଶୋରି ଦେଇଛନ୍ତି । ସେହି ଅବସରରେ କବି ବନମାଳୀ ଦାସ ଠିକ୍ ଶ୍ରୀରାଧାଙ୍କ ପଦକଙ୍କର ରୂପ ମୁଗ୍ଧକଣ୍ଠରେ ଗାଇ ଛନ୍ତି-

"ସଖିରେ ଶ୍ୟାମଚନ୍ଦ୍ରଙ୍କୁ ଚାହିଁ ।
ଯୁବାନାସା ଦମ୍ଭ ରଖିବେ ନାହିଁ ॥
ତା ଯେଉଁ ଚାହାଣି ନୟନଠାରୁ ସେ କି ମାରି ଶାଣଦିଆ କୁଠାରି ।
ତାର ଯେଉଁ ମନ୍ଦହାସ ବୃନ୍ଦୁରୀ କୁଳବତୀ ଧୈର୍ଯ୍ୟକଣ୍ଟା କତୁରୀ ॥
ଆହା ତାହାର ଯେ ମୋହନ ବେଶ ମୋତେ ଠ କରଇ ଭାବେ ଆବେଶ
ବୋଲେ ବନମାଳୀ ଆଗୋ ରାଧିକେ
ତୁମେ ସିନା ଶ୍ୟାମ ପ୍ରେମାରାଧିକେ"॥

ଠିକ୍ ଅନୁରୂପ ରୂପାନୁରାଗ—
"ସଙ୍ଗିନିରେ, ଚାହାଁ ବେଣୁପାଣିକି ।
ଚିତ୍ତ ଚଉରଚୋର ଚିନ୍ତାମଣି କି ॥

ବକୁଳ ସେବତି ମଲ୍ଲୀ ମାଳତୀ କଥା ।
ନାନା କୁସୁମେ କ ଶୋଭା ଦାଙ୍କ ଟାହିଆ ।।
ତହିଁ ଖଞ୍ଜି ଅଛୁ ରଙ୍ଗ ଜାମୁଡାଳ
ସଙ୍ଗରେ ମୟୂର ଚନ୍ଦ୍ରକା ପକ୍ଷୀ" ।।

ଠିକ୍ ସେତିକି ବେଳେ କୃଷ୍ଣପ୍ରେମାନୁରାଗିଣୀ ଶ୍ରୀରାଧାଙ୍କ ପନ୍ଥେପନ୍ଥେ ଭାବୁକ କଳ୍ପନାରେ ମୁଗ୍ଧ ବନମାଳୀ ଛୁଡ଼ାହୋଇ ଠାକୁରାଣୀଙ୍କ ମନକୁ ପାଇଲା ପରି କହୁଛନ୍ତି—

"ଦାସ ବନମାଳୀ ବୋଲେ ଗୋ ଶୁଣ ।
ଗୋପ-ନନ୍ଦସୁତ ମୋହନ ଗୁଣ ।।
କୁଳବତୀ ବ୍ରତ କରିବାକୁ ହତ
ନୂଆ ମଦନ ସେ ବରନ୍ତେ କି"।।

ଶ୍ରୀକୃଷ୍ଣଙ୍କ ମଦନ ସୁନ୍ଦର ମନୋହର ମୂର୍ତ୍ତି ଦେଖି ଶ୍ରୀରାଧା ଭାବାବିଷ୍ଟା ହୋଇ ପଡ଼ୁଛନ୍ତି । କାମର ପଞ୍ଚବାଣରେ ସେ ଜର୍ଜରିତା ହୋଇ ମିଳନର ସୂତ୍ର ଖୋଜୁଛନ୍ତି । ମିଳନର ଆଶା ସୁଦୂର ପରାହତ ବୋଲି ଜାଣି ମନେ ମନେ ଅତିଶୟ ବ୍ୟଥିତା ହୋଇ ମୋହ ପ୍ରାପ୍ତ ହୋଇ ଯାଉଛନ୍ତି । ସେତିକିବେଳେ ଆଉ ଥରେ ତାଙ୍କ ଲୋଚନ ପଥରେ ପଥିକ ହୋଇ ଶ୍ରୀକୃଷ୍ଣ ଶ୍ରୀରାଧାଙ୍କ ବିରହଦଗ୍ଧ ପ୍ରାଣରେ ଉଦ୍ଦୀପନା ସୃଷ୍ଟି କରିଛନ୍ତି। ଉଦ୍ଦୀପନ ବିଭାବ ଫଳରେ ନାୟିକା ଶ୍ରୀମତୀ ଶ୍ରୀକୃଷ୍ଣଙ୍କ ଠାରେ ଆତ୍ମସମର୍ପଣ କରିବାକୁ, ଅଗ୍ନିରେ ପତଙ୍ଗଝାସ ଦେଲା ପରି, ପ୍ରସ୍ତୁତ ହୋଇ ଯାଉଛନ୍ତି । ସେତିକି ବେଳେ କବି ବନମାଳୀ ଠାକୁରାଣୀଙ୍କୁ ଅନ୍ତର ଉକ୍ତାଟ କରାଇବାକୁ ଯାଇ ଗାଉଛନ୍ତି—

"ନ ଦେଖିଲୁ ଆଜ ନେତ୍ର ଲୋ ସଜନୀ
ନ ଦେଖିଲୁ ଆଜ ନେତ୍ର ।

ଲଳିତ ମୂରତି ଲଳିତ ମୋହିଲା
ଦଳିତ-ଅଞ୍ଜନ-ଗାତ୍ର ଲୋ, ସଜନି ।
କି ଦେଖିଲି ଆଜ ନେତ୍ର ।
ଅଳକା କପୋଳେ ଚପଳା କି ଖେଳେ,
କେକି ପୁଚ୍ଛ ଚନ୍ଦ୍ରଚୂଳ ।

× × ×

ବାନ୍ଧୁ ପିନ୍ଧିବାର କାନ୍ଧୁ ପୀତାମ୍ବର
ଅଧର କର୍ପୂର ଉଚ୍ଛୁ ।
ବାରିବାକୁ ଆଜ ଅଚ୍ଛୁ କି ସେ ଶ୍ୟାମ,
ସୁନ୍ଦର ପଣକୁ କଚ୍ଛୁ ଲୋ,
ସଜନି, କି ଦେଖିଲି"...

ଏଣିକି ଶ୍ରୀରାଧା ମିଳନର ଉତ୍କଣ୍ଠାରେ ଲଜ୍ଜା, ଲୋକାପବାଦ କୁଳର ମାନ ମର୍ଯ୍ୟାଦା, କୁଳବଧୂର କର୍ତ୍ତବ୍ୟ ସବୁକିଛି ଭୁଲି ଯାଇଛନ୍ତି । ତାଙ୍କ ମନର ଗଭୀର କୋଣରେ ଶ୍ୟାମନାଗରଙ୍କ ଲାବଣ୍ୟ–ଛଟା ଲାଖିଯାଇଛି । ଯେ ସର୍ବଦା ପ୍ରତ୍ୟକ୍ଷ କରିଛନ୍ତି, ନଟବରଙ୍କ 'କୋଟି-କଳାକର-ଶିରୀ' । ସେ ଘରୁ ଗୋଡ଼ କାଢ଼ି ବାହାନା ଛଳରେ ପ୍ରିୟତମଙ୍କୁ ଆହୁରି ନିକଟରେ ଦେଖିବା ଲାଗି ଉଚ୍ଛନ୍ନ ହୋଇ ଉଠିଛନ୍ତି । ସେ ବେଳକାଳ ଉଣ୍ଡି ଏକାକିନୀ କାଖରେ କଳସୀଧରି ପାଣି ଆଣିବା ଛଳରେ ଯମୁନାର ଜଳଘାଟକୁ ଧାଇଁ ଯାଇଛନ୍ତି । ସେତିକିବେଳେ ବେଣୁଧର ସୁସ୍ୱରରେ ବେଣୁ ବଜାଇ ଶ୍ରୀମତୀଙ୍କ ଶରୀରକୁ ଜର୍ଜ୍ଜରିତ କରିଦେଇଛନ୍ତି । ସାତ୍ତ୍ୱିକ ବିକାରରେ ଜର୍ଜରିତା ହୋଇ ରାଧିକା କୌଣସିମତେ ଘରକୁ ଫେରିଆସି ସଖୀ ଆଗରେ ପାଗଳିନୀଙ୍କ ପରି ବର୍ଣ୍ଣନା କରିଛନ୍ତି—

" ଶ୍ୟାମବନ୍ଧୁ ମୋହିନୀ କଲା,
ଚାହିଁବା ମାତ୍ରକେ ମନ ମୋହିଲା ।।

କାଳନ୍ଦୀ କୂଳରେ କଦମ୍ବ ମୂଳରେ
ତ୍ରିଭଙ୍ଗିମା ରୂପ ଧଇଲ ହୋଇଲ ।
ସ୍ତମ୍ଭନ ମୋହନ ବଶ ଉଚ୍ଚାଟନ
ସ୍ବଚ୍ଛନ୍ଦେ ତହିଁ ବେଣୁବାଇଲ ।

× × ×

ନାଶିଲ ବିବେକ ଆଜ ବ୍ରଜରାଜ ପୁଅ ଗୋ ।
କି ମନ୍ତ୍ର ଜାଣି ସ୍ବଚ୍ଛେ କମ୍ପାଇ ହୃଦୟ ଗୋ" ॥

ମିଳନ ପରେ ସୁଖାନୁଭୂତି ଗୁଡ଼ିକ ସଖୀ ଆଗରେ କହିବା ନାୟିକା ର ସସିକ୍ତା ହୋଇଥାଏ । ନାଗରବରଙ୍କ ବ୍ୟବହାରରେ ଅତ୍ୟନ୍ତ ପୁଲକିତା ହୋଇଥିଲେ ମଧ୍ୟ ସଖୀ ଆଗରେ ଛଳୋକ୍ତି ପ୍ରକାଶ କରି ଆନନ୍ଦ ଅନୁଭବ କରିବା ପ୍ରଫୁଲ୍ଲିତ ନାୟିକାର ଲକ୍ଷଣ । ସ୍ନାନ କରୁଥିବା ସମୟରେ ନାୟିକା ଶ୍ରୀମତୀଙ୍କ ଉରଜ ଯୁଗଳକୁ ନାୟକ ଶ୍ରୀକୃଷ୍ଣ ଅକସ୍ମାତ୍ ଉପସ୍ଥିତ ହୋଇ ପ୍ରତ୍ୟକ୍ଷ କରିଥିବାରୁ, କବି ବନମାଳୀ ସେହି ଦୃଶ୍ୟଟିକୁ ଜଣେ ରସିକ କବି ଭାବରେ ବର୍ଣ୍ଣନା କରିଥିଲେ ହେଁ, ଠାକୁରାଣୀଙ୍କର ଅନୁଗତ ଭୃତ୍ୟ ରୂପେ ତତ୍କାଳୀନ ଉପାୟ ସୂଚିତ ଦେଇ; ପଦ୍ୟଟିର ସୌନ୍ଦର୍ଯ୍ୟ ଅଧିକ ମାତ୍ରାରେ ବୃଦ୍ଧି କରିଛନ୍ତି ।

"କି ଲାଜ ପାଇଲି ଆଜ ରେ ବାନ୍ଧବ,
କି ଲାଜ ପାଇଲି ଆଜ ।
ଉରେ ଶର ଦେଇ ତରି ନ ସହଇ
ଆଗରେ ନାଗରରାଜ ରେ ॥
ତଉଦଗେ ଗୁହିଁ କେବଣେ କେହି ନାହିଁ
ନସ୍ତୁଟ ଘାଟକୁ ଗଲି ।
ଅଙ୍ଗରେ କୁଙ୍କୁମ ବୋଳି ହେଉଥିଲି
ଉଦ୍ଧାରି ଅମ୍ବର ଶ୍ଲେଳ ରେ ।

ପାଣି ପଲ୍ଲବରେ ଦୋଉଡ଼ଣା ନ ଯାଇ
ବର୍ତ୍ତୁଳତର ଉରଜ ।
ଯେତେ ଯତ୍ନକଲେ ମହାମନ୍ତ୍ରୀଧର
ଡ଼ାଙ୍କଇ ନକ ସରୋଜ ରେ ।
ପାଖେ ଘୋଡ଼ାଇଲେ ଆରପାଖ ଦିଶେ
ଉପାୟ୍ କିଛି ନ ଦିଶେ ।
ମୁଖ ଅବନତ କଲେ ସେ ଉନ୍ନତ
ପୟୋଧର ବେନ ଠେସେରେ ।।
କୁନ୍ତଳ ଉହାଡ଼ ରଖନ୍ତି ମୁଁ ଅବା
ବାନ୍ଧିଥିଲି ଟେକ ବେଣୀ ।
ବୋଲେ ବନମାଳୀ ଶୁଣ ଠାକୁରାଣୀ
ଜଳେ ଲୁଚିଥାନ୍ତି ଟିକ ରେ” ।।

କବି ‘ଗ୍ରାମ୍ୟରସ’ରେ ବର୍ଣ୍ଣିତ ଏହାଠୁ ପାଇଲୁ କାନ୍ଧି’ ପଦ୍ୟର ପ୍ରସ୍ତୁତ ପଦ୍ୟଟି ଉତ୍ତର ବୋଲି ମନେ ହୁଏ । ପୟୋଧର ବର୍ଣ୍ଣନା କରି-ବାରେ ପ୍ରତ୍ୟେକ କବି ତା’ର ବର୍ଣ୍ଣନା କୃତିତ୍ୱରେ ଉତ୍କର୍ଷତା ଦେଖାଇ ଥାଆନ୍ତି । କବି ‘ଗ୍ରାମ୍ୟରସ’ ପ୍ରକରଣରେ, ବିଳାସିନୀ ନାୟିକା ଆଗରେ କୌତୂହଳୀ ସୁରସିକ ନାଗରର ଉକ୍ତି ରୂପେ “ଏହାଠୁ ପାଇଲୁ କାନ୍ଧି + + + ତୋହର ଯେବେ ସେ ଅର୍ଜିଲି ପଦାର୍ଥ ଫେଡ଼ିଦିଅ ନେଇ ଦେଖୁ”... ଲେଖିଥିଲେ । କବି ବନମାଳୀଙ୍କ ରଚିତ ପ୍ରସ୍ତୁତ ‘ଗ୍ରାମ୍ୟରସ’ ମୂଳକ ପଦ୍ୟଟି ପରି କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ନାମରେ ଭଣିତ ହୋଇଥିବା ଗୋଟିଏ ଗୀତ ମିଳୁଛି । ପଦ୍ୟଟି ହେଉଛି—

ସମା ଭିତରରେ,
ଏହାଠୁ ପାଇଲୁ କାନ୍ଧି ।
ଅତି ଯତନରେ ଶିବପୂଜା କରି ଗଙ୍ଗାରେ ଥିଲୁ କି ଗାନ୍ଧି ।

ଯେଉଁଦିନ ବ୍ରହ୍ମା ହୋଇ ବିଶ୍ୱକର୍ମା,
ଏ କୁଚକୁମ୍ଭ ଗଢ଼ିଲେ ।
ହୀରାମାଳା ମୋତି ମାଣିକ୍ୟ ପ୍ରବାଳ,
କମ୍ପିତ ତାଙ୍କୁଣି ଦେଲେ ।
ଯେଉଁଦିନ ଧନ- ଲକ୍ଷ୍ମୀ ବନ୍ଧାପନା,
ଆନନ୍ଦରେ ବିଜେକରି ।
ସେ ଉନ୍ନତକୁଆ ଥୋଇଥିବା ବେଳେ,
ଅ.ଣିଲୁକ ଶ୍ରେଷ୍ଠ କରି ।।
ଅତି ଯତନରେ କ୍ଷୀନ-ବସନରେ,
ଘୋଡ଼ାଇ ରଖିଛୁ ଯାହା ।
ତୁ ଅବା ବୋଲିବୁ କେହି ଦେଖି ନାହାଁ,
ମୋ ନେତ୍ର ପଡ଼ିଲା ତହାଁ ।।
ବୋଲେ **ଉପେନ୍ଦ୍ର** ଶ୍ରେଷ୍ଠ ନୋହେ ଯେବେ,
ବସନ କମ୍ପାଇଁ ତାଙ୍କୁ ।
ଗୋଟିଏ କ ଅବା ଅନ୍ତିମ ପଦାର୍ଥ,
ଫେଡ଼ିଦିଅ ନେତ୍ର ଦେଖୁ ।।

( ବଡ଼ମ୍ବା ରଜାଙ୍କଠାରୁ ସଂଗୃହୀତ ରାଜ୍ୟସଂଗ୍ରହାଳୟର OL/1840 ପୋଥି )

ବନମାଳୀଙ୍କର ପୂର୍ବବର୍ତ୍ତୀ କବି ଉପେନ୍ଦ୍ର ଭଞ୍ଜଙ୍କ ନାମରେ ଏପରି ଗୋଟିଏ କବିତା ମିଳୁଥିବାରୁ, ତାହାର ଅନୁକୃତି ପରବର୍ତ୍ତୀକାଳରେ ହୋଇଥିବାର ଧାରଣା କରି ହୁଏ । କିନ୍ତୁ କବି ବନମାଳୀ ଶ୍ରୀରାଧାକୃଷ୍ଣ ଭକ୍ତିଭାବରେ ନିଜକୁ ନିମଜ୍ଜିତ କରାଇବା ପରେ ମଧ୍ୟ ତାଙ୍କ କବିପ୍ରତିଭାରୁ ଆଦିରସର ନିର୍ଝର ଆଦୌ ଅନ୍ତର୍ହିତ ହୋଇ ନଥିଲା ।

କବି ବନମାଳୀ ଅନୁରୂପ ଗୋଟିଏ ଅନୁଭୂତି ଶ୍ରୀରାଧାଙ୍କ ମୁଖରେ ବର୍ଣ୍ଣନା କରାଇ ମିଳନ ସୁଖର ବାସ୍ତବିକ ପରିପାକ କରାଇଛନ୍ତି । ଶ୍ରୀକୃଷ୍ଣଙ୍କ ପ୍ରେମାନୁରାଗିଣୀ ହୋଇ ଶ୍ରୀରାଧା ବ୍ରଜପୁରରେ କଳଙ୍କ ପସରା ମୁଣ୍ଡାଇଛନ୍ତି । ବାଟ ଘାଟ ହାଟରେ ତାଙ୍କ ନିନ୍ଦା ରଟି, କୁଳରେ କଳଙ୍କ ବୋଲି ହୋଇ

ଯାଉଛନ୍ତି । ସଖୀମାନେ ଆସି ତାଙ୍କୁ କୃଷ୍ଣପ୍ରେମ ତ୍ୟାଗ କରିବା ଲାଗି ଯେତେ ବୁଝାଇଲେ ମଧ୍ୟ, ଶ୍ରୀମତୀ ଆଦୌ ସେଥିପ୍ରତି କର୍ଣ୍ଣପାତ କରି ନାହାନ୍ତି । ସେ ନଟବର ନାଗରଙ୍କ ଲାବଣ୍ୟ ଠାଣିରେ ଏପରି ମଜ୍ଜି ଯାଇଛନ୍ତି ଯେ 'ଗଣ୍ଠି ଧନ କାଳିଆ କାଞ୍ଚନ'କୁ ଗଳାରୁ ବାହାର କରିଦେବା ଲାଗି ଆଦୌ ପ୍ରସ୍ତୁତ ନୁହନ୍ତି । ପ୍ରେମରସରେ ସେ ଏପରି ମଜ୍ଜି ଯାଇଛନ୍ତି ଯେ, ଲୌକିକ ନିନ୍ଦା ପ୍ରଶଂସାକୁ ତାଙ୍କର ଭ୍ରୂକ୍ଷେପ ନାହିଁ । ଶ୍ରୀମତୀ ରାଧିକାଙ୍କ ହୃଦୟରେ 'ରସବନ୍ଧ'ର ସନ୍ଧାନ କରି କବି ବନମାଳୀ ମଞ୍ଜୁଳପଦାବଳୀର ପ୍ରୟୋଗରେ ଗାଇଛନ୍ତି—

"ମୁଁ ତ କୁଳରୁ ହୋଇଲି ବାହାର ଲୋ ସଜନି ।
ଶ୍ୟାମ ପ୍ରୀତି କରି ଗଳାରୁ ମେଞ୍ଚାଇ ସଜନି ॥
ଯେ ଯେତେ କହନ୍ତୁ ନିନ୍ଦା କୁବଚନ,
ତହିଁକି ଶୋଚନା ନାହିଁ କଦାଚନ ।
ଗଣ୍ଠିଧନ ମୋର କାଳିଆ କାଞ୍ଚନ,
ମୁଁ ତ କାହିଁ କିଙ୍କରୀ ତାହାର ଲୋ ॥

+ + +

ନବ ନଟବର ଲାବଣ୍ୟ– ଠାଣିକି
ସେ ମନମୋହନ ମୁରଲୀ ଧ୍ୱନି ॥
ଯାତେଣାରି ପାରିବ କେଉଁ ପରି ସଖି,
ନବ-ତମାଳ କାନ୍ତି ଯାହାର ଲୋ ॥

ବୋଲେ ବନମାଳୀ ଶୁଣ ଶ୍ରୀରାଧିକେ,
ଅପକୀର୍ତ୍ତି ହାଟ ବସିବ ଅଧିକେ ।
ଗୁପତ ପୀରତି ଗୁପତ ସୁରତି,
ଗୁପତେ କର ବିହାର ଲୋ ସଜନି ।

କବି ବନମାଳୀଙ୍କର ପଦ୍ୟସମ୍ଭାରକୁ ଏକ୍ସ ପରିପ୍ରେକ୍ଷୀରେ ବିଚାର କରିବାକୁ ଗଲେ, ସେ ଜଣେ ଉଚ୍ଚକୋଟୀର ଶବ୍ଦଶିଳ୍ପୀ, ପ୍ରତିଭାବାନ୍, ଅନୁଭୂତି ସମ୍ପନ୍ନ, ସଂସ୍କୃତ ତଥା ଓଡ଼ିଆ ଭାଷା ଓ ସାହିତ୍ୟରେ ଧୂରୀଣ ବ୍ୟକ୍ତି ଥିଲେ ବୋଲି ନିଃସନ୍ଦେହରେ କୁହାଯାଇପାରେ । ତାଙ୍କ ରଚିତ 'ସୂଚିତ୍ର ରାମାୟଣ' ପୁସ୍ତକଟି ଖଣ୍ଡିଏ ଅନୁବାଦ ଗ୍ରନ୍ଥ ହୋଇଥିଲେ ହେଁ, ସେଥିରେ ତାଙ୍କର କବି ପ୍ରତିଭା ତଥା ଭାଷା ଉପରେ ଅସାଧାରଣ ଦକ୍ଷତା ବେଶ୍ ସ୍ପଷ୍ଟ ହୋଇଛି । ତଦ୍‌ବ୍ୟତୀତ ତାଙ୍କ ପଦ୍ୟାବଳୀ ଓଡ଼ିଆ ସାହିତ୍ୟରେ ଯବନକବି ସାଲବେଗଙ୍କ ପଦ୍ୟାବଳୀ ପରି ଲୋକପ୍ରିୟତା ଅର୍ଜନ କରିଛି ।



# କବି ସାଲବେଗ ଓ କବି ବନମାଳୀ

ଭକ୍ତକବି ସାଲବେଗ ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ଜନ୍ମ ସମୟ ଖ୍ରୀ. ଅ. ୧୬୦୭–୧୬୦୮ ବୋଲି ଭକ୍ତ କବି ସାଲବେଗ' ପୁସ୍ତକରେ ବହୁ ପ୍ରମାଣ ସହିତ ମୁଁ ଆଲୋଚନା କରିଛି । କିନ୍ତୁ ତାଙ୍କ ଜନ୍ମ ସମୟ ସମ୍ପର୍କରେ ଅନ୍ୟାନ୍ୟ ଆଲୋଚକମାନେ ପରବର୍ତ୍ତୀ ଆଲୋଚନାରେ ଖ୍ରୀଷ୍ଟାବ୍ଦ ଷୋଡ଼ଶ ଶତାବ୍ଦୀର ଶେଷଦଶକ ବୋଲି ମତ ଦେଇଅଛନ୍ତି । ସେମାନଙ୍କ ଆଲୋଚନାର ମୁଖ୍ୟ ପ୍ରତିପାଦ୍ୟ ବିଷୟ ହେଉଛି— ସେ (ସାଲବେଗ) ୧୬୦୭-୮ରେ ଜନ୍ମ ହୋଇଥିଲେ ପନ୍ଦର ଷୋଳ ବର୍ଷ ବୟସରେ କବିତା ରଚନା କରିବା ଏକାନ୍ତ ଅସମ୍ଭବ ।

କିନ୍ତୁ ଜଣେ ପ୍ରତିଭାବାନ୍ ବ୍ୟକ୍ତିଙ୍କ ପକ୍ଷରେ ଏହା ଅସମ୍ଭବ ବୋଲି ଆଦୌ ଜଣାଯାଏ ନାହିଁ । ବିଶେଷତଃ ସାଲବେଗ ଦୈବାନୁଗ୍ରହ ଲାଭ କରିଥିବାରୁ, ପନ୍ଦର ଷୋଳ ବର୍ଷ ବୟସ ତାଙ୍କ କବିତା ରଚନା ପକ୍ଷରେ ଅନୁପଯୁକ୍ତ ହେବା ଆଦୌ ଅସମୀଚୀନ ନୁହେଁ । ତଦ୍‌ବ୍ୟତୀତ ସାଲବେଗଙ୍କ ପିତା ଲାଲ୍‌ବେଗ ରାଜା ମାନସିଂହଙ୍କ ସହିତ ଓଡ଼ିଶା ଆସି ଜନୈକା ବ୍ରାହ୍ମଣୀକୁ ଅପହରଣ କରିଥିବାର ଆଦୌ ପ୍ରମାଣ ଉପଲବ୍‌ଧ ହୁଏ ନାହିଁ । ବିଶେଷତଃ ମାନସିଂହ ଓଡ଼ିଶାର ଗଜପତି ରାମଚନ୍ଦ୍ର ଦେବଙ୍କ ବିରୁଦ୍ଧରେ ଅଭିଯାନ ଚଳାଇଥିବା ସମୟରେ ବ୍ରାହ୍ମଣଶାସନ ଉପରେ ଆକ୍ରମଣ ଚଳାଇଥିବାର ପ୍ରମାଣ ମିଳେ ନାହିଁ । ଓଡ଼ିଶାକୁ ମୋଗଲଶାସନ ଅଧୀନରେ ରଖିବା, ମାନସିଂହଙ୍କ ଆକ୍ରମଣର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ବାଦ୍‌ଶାହ ଆକବର ସେତେବେଳେ ମୋଗଲ ସମ୍ରାଟ ଥିବା ହେତୁ ହିନ୍ଦୁମାନଙ୍କ ପ୍ରତି ତାଙ୍କର ଉଦାରନୀତି ସର୍ବସାଧାରଣଙ୍କ ସ୍ତରରେ ଅନୁସୃତ ହେଉଥିଲା । ମାନସିଂହ ଜଣେ ନୈଷ୍ଠିକ ହିନ୍ଦୁ ରାଜପୁତ୍ର ହୋଇଥିବାରୁ, ତାଙ୍କ ଅଧିନାୟକତ୍ୱରେ ଓଡ଼ିଶା ଆକ୍ରମଣ ହୋଇଥିବା ସମୟରେ ଦାଣ୍ଡମୁକୁନ୍ଦ ପୁର ପରି ଏକ ପ୍ରସିଦ୍ଧ ବ୍ରାହ୍ମଣ ଶାସନ ଉପରେ ମୋଗଲସୈନ୍ୟ ମାନଙ୍କ ପକ୍ଷରୁ ନିର୍ମମ ଆକ୍ରମଣ ହୋଇଥିବା ଅସମ୍ଭବ ବୋଲି ମନେ ହୁଏ । ସେହି ଦୃଷ୍ଟିରୁ ବାଦ୍‌ଶାହ ଜାହାଙ୍ଗୀରଙ୍କ ସମ୍ମୁଖରେ ବେଗମ୍ ନୁରଜିହାନ ଓ ମୁଲ୍ଲାମାନଙ୍କ ନିର୍ଦ୍ଦେଶରେ ହିନ୍ଦୁଜଗତର ଶ୍ରେଷ୍ଠ ବିଗ୍ରହ ଶ୍ରୀଜଗନ୍ନାଥ

ଦେବଙ୍କ ଶ୍ରୀମନ୍ଦିର ଉପରେ ଆକ୍ରମଣ ହୋଇଥିଲା, ସେଥିଲାଗି ବାଦ୍‌ଶାହଙ୍କ ବାଲ୍ୟବନ୍ଧୁ ଲାଲବେଗଙ୍କ ଉପରେ ଏପରି ଏକ ବହୁଘୋଷିତ ଆକ୍ରମଣର ଦାୟିତ୍ୱ ଦେଇଥିବା ଖୁବ୍ ସମ୍ଭବତଃ ସମୀଚୀନ ମନେହୁଏ ।

ବିଶେଷତଃ ଆକବରଙ୍କ ଶାସନକାଳରୁ ପୁରୀଜିଲ୍ଲାର ପିପିଲିଠାରେ ଗୋଟିଏ ମୋଗଲ ସେନାଘାଉଣି ପ୍ରତିଷ୍ଠିତ ହୋଇଥିବାରୁ, ସେହିଠାରୁ ସୁସଜ୍ଜିତ ସେନାମାନଙ୍କୁ ନେଇ ପୁରୀର ଶ୍ରୀମନ୍ଦିର ଓ ଆଖପାଖରେ ଥିବା ପ୍ରସିଦ୍ଧ ବ୍ରାହ୍ମଣ ଶାସନ ଉପରେ ଆକ୍ରମଣ କରିବା ଅପେକ୍ଷାକୃତ ସହଜ ଥିଲା । ହିନ୍ଦୁମନ୍ଦିର, ଦେବ ବିଗ୍ରହ ଓ ବ୍ରାହ୍ମଣଶାସନ ଗୁଡ଼ିକୁ ଧ୍ୱଂସ କରିଦେଲେ, ହିନ୍ଦୁମାନଙ୍କ ମନୋବଳ ସହଜରେ ଭାଙ୍ଗି ପଡ଼ିବ ବୋଲି କଟ୍ଟର ମୋଗଲମାନଙ୍କର ଧାରଣା ଥିଲା । ତେଣୁ ବାଦ୍‌ଶାହ ଜାହାଙ୍ଗୀର ଏପରି ଏକ ଲୋମହର୍ଷଣକାରୀ ଆକ୍ରମଣ ଚଳାଇବାକୁ ତାଙ୍କର ଅତ୍ୟନ୍ତ ପ୍ରିୟପାତ୍ର, ବାଲ୍ୟବନ୍ଧୁ ତଥା ବଙ୍ଗଳାର ସୁବାଦାର ଲାଲ୍‌ବେଗ୍‌ଙ୍କ ଉପରେ ନ୍ୟସ୍ତ କରିଥିବା କେତେକ ଦୃଷ୍ଟିକୋଣରୁ ଯୁକ୍ତିଯୁକ୍ତ ବୋଲି ମନେ ହୁଏ । ଆହୁରିମଧ୍ୟ ଲାଲବେଗ୍‌ଙ୍କ ଓଡ଼ିଶା ଆଗମନର ପ୍ରମାଣ, କଟକର 'ଲାଲ୍‌ବାଗ' କୋଠିବ୍ୟତୀତ ଆଉ କୌଣସି ପ୍ରତ୍ୟକ୍ଷ ପ୍ରମାଣ ମିଳୁନାହିଁ । ଭକ୍ତରାମଦାସ 'ଦାତ୍ୟତାଭକ୍ତ ରସାମୃତ'ରେ ଯେଉଁ ଲାଲବାଗ୍ ଚରିତ ଉପସ୍ଥାପିତ କରିଛନ୍ତି, ତାହାମଧ୍ୟ ଶତାଧିକ ବର୍ଷପରେ କିର୍ଣ୍ଣିତ ଭାବରେ ଜନଶ୍ରୁତି ଉପରେ ନିର୍ଭର କରିଥିବାର ସ୍ପଷ୍ଟଧାରଣା ହୁଏ ।

ସେ ଯାହାହେଉ, ସାଲବେଗଙ୍କ ଜନ୍ମ ଖ୍ରୀ. ଅ. ୧୬୦୭ ୮ ରେ ହେଉ, କିମ୍ବା ଖ୍ରୀ. ଅ. ୧୫୯୧–୯୨ ରେ ହେଉ ସେ ସପ୍ତଦଶ ଶତାବ୍ଦୀରେ ନିଜମାତାଙ୍କ ଦ୍ୱାରା ଉପଦିଷ୍ଟ ହୋଇ ଶ୍ରୀକୃଷ୍ଣ ଓ ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ ହୋଇଥିଲେ । ଶ୍ରୀଜଗନ୍ନାଥଙ୍କ ଅପାର କରୁଣା ବଳରୁ ତାଙ୍କୁ ପୁରୀର ବଡ଼ଦାଣ୍ଡରେ ଖଣ୍ଡିଏ ଆଶ୍ରମ କରି ଭଜନ କରିବା ଏବଂ ପ୍ରଭୁଙ୍କ ଗୁଣକୀର୍ତ୍ତନ କରି କବିତା ରଚନା କରିଥିବାର ସୁବିଧା ମିଳିଥିଲା । ନିଜ ଜୀବନକୁ ଭାବନା-ମପ୍ରେମ-ତରଙ୍ଗିଣୀରେ ମିଶାଇ ଦେଇ ଯବନକବି ସାଲବେଗ ବହୁ

ଭାଷାରେ ଭଜନ ରଚନା କରିବା ସଙ୍ଗେ ସଙ୍ଗେ ପୁରୀରେ ଶେଷନିଃଶ୍ବାସ ତ୍ୟାଗ କରିଥିଲେ । ଅଦ୍ୟାପି ତାଙ୍କ ସମାଧି ପୁରୀ ବଡ଼ଦାଣ୍ଡରେ ରହିଛି । ତାହା ତାଙ୍କ ଭଜନ "ଜଗନ୍ନାଥ ହେ, କିଛି ମାଗୁନାହିଁ ମୁଁ ତୋତେ । ମାଗୁ ନାହିଁ ଧନ ମାଗୁନାହିଁ ଜନ ମାଗୁଛି ଶରଧା ବାଲିରୁ ହାତେ" ତଥା

"ଜଗବନ୍ଧୁ ହେ ଗୋସାଇଁ ।
ତୁମ୍ଭ ଶ୍ରୀଚରଣ ବିନୁ ଅନ୍ୟଗତି ନାହିଁ ।।
ସାତଶ ପଞ୍ଚାଶ କୋଶ ବାଟ ବାଟ ବାଶୁ ନାହିଁ ।
ମୋହ ଦିବା ଯାଏ ନନ୍ଦଘୋଷେ ଥିବ ରହି" ।।

ଶୀର୍ଷକ ଭଜନରୁ ସୁସ୍ପଷ୍ଟ ହୋଇଥାଏ । ସପ୍ତଦଶ ଶତାବ୍ଦୀର ସାମାଜିକ ରୂଢ଼ି ବନ୍ଧନ ମଧ୍ୟରେ ସାଲବେଗଙ୍କୁ ବହୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥିବ । ସମାଜପତିମାନଙ୍କ ଅତ୍ୟାଚାରକୁ ସହି ସେ ଶ୍ରୀଜଗନ୍ନାଥଙ୍କ ନାମ କୀର୍ତ୍ତନରେ ଏକାଗ୍ରତାର ସହିତ ମଜ୍ଜିଥିବା ସଙ୍ଗେ ସଙ୍ଗେ କିଛି ଅଲୌକିକ କାର୍ଯ୍ୟକରି ଦେଖାଇଥିବେ । ତେଣୁ ତାଙ୍କୁ 'ଶରଧାବାଲିରୁ ହାତେ' ମିଳିଥିବ । ନୋହିଲେ ଜଣେ ବିଜାତୀୟ ବିଶେଷତଃ ଶ୍ରୀମନ୍ଦିର ଉପରେ ଆକ୍ରମଣ କରୁଥିବା ଇସ୍‌ଲାମ ଧର୍ମ-ମତାବଲମ୍ବୀ ବ୍ୟକ୍ତିକୁ ବଡ଼ଦାଣ୍ଡରେ ସ୍ଥାନ ଦେବା, ପରବର୍ତ୍ତୀ କାଳରେ 'ଶରଧାବାଲି' ଉପରେ ତାଙ୍କର ସମାଧି ସ୍ଥାପିତ ହେବା ଅସାଧାରଣ କାର୍ଯ୍ୟ ବୋଲି କହିବାକୁ ହେବ ।

ସାଲବେଗ ବହୁଭାଷାଭିଜ୍ଞ ଥିବାରୁ, ଓଡ଼ିଆ, ସଂସ୍କୃତ, ବ୍ରଜବୋଲି, ବଙ୍ଗଳା ଭାଷାରେ ତାଙ୍କର ପଦ୍ୟାବଳୀ ଆଜି ଲୋକଲୋଚନର ଗୋଚରକୁ ଆସି ପାରିଛି । ତାଙ୍କ ମାତା ସୁସଂସ୍କୃତି-ସମ୍ପନ୍ନ କୁଳୀନ ବ୍ରାହ୍ମଣ କୁଳରେ ଜନ୍ମଗ୍ରହଣ କରିଥିବାରୁ, ତାଙ୍କ ପ୍ରଭାବ ସାଲବେଗଙ୍କ ଉପରେ ପ୍ରତ୍ୟକ୍ଷ ରୂପେ ପଡ଼ିଥିଲା । ସେ ଓଡ଼ିଆ ଭାଷାରେ ବ୍ୟୁତ୍ପନ୍ନ ହୋଇ ଉଠିଥିଲେ । ଶ୍ରୀଜଗନ୍ନାଥ ଓ ରସରାଜ ଲୀଳାମୟ ଶ୍ରୀକୃଷ୍ଣଙ୍କ ପ୍ରତି ତାଙ୍କ ହୃଦୟରେ ଗଭୀର ଶ୍ରଦ୍ଧା ଥିବାରୁ, ସେ ତାଙ୍କ ଲୀଳାକୁ ସରଳ, ସୁବୋଧ ଭାଷାରେ ରଚନା କରିଥିଲେ ।

ଭକ୍ତ ସାଲବେଗ କୌଣସି ସମ୍ପ୍ରଦାୟ ବିଶେଷର ସନ୍ନ୍ୟାସୀ ହୋଇ ନଥିବାରୁ, ତାଙ୍କର ଶିଷ୍ୟମଣ୍ଡଳୀ ନଥିଲା । କେବଳ ଶ୍ରଦ୍ଧାବାନ୍ ସାଧାରଣ ଜନତା ସାଲବେଗଙ୍କ ହୃଦୟସ୍ପର୍ଶୀ ଭଜନ ଗୁଡ଼ିକୁ ଶୁଣି ଶୁଣି ମନେ ରଖି ଥିବା ଅତ୍ୟନ୍ତ ସମୀଚୀନ । କାରଣ ଅଦ୍ୟାପି ସାଲବେଗଙ୍କ ନାମରେ ଭଣିତ ଯେତେଗୋଟି ଭଜନ ମିଳୁଛି, ସେ ଗୁଡ଼ିକ ବିଭିନ୍ନ ଅଞ୍ଚଳରୁ ମିଳିଥିବା ତାଳପତ୍ର ଓ ଭଜନ ପୋଥିରୁ ସଂଗୃହୀତ । କେବଳ ଗୋଟିଏ ପୋଥିରୁ ସାଲବେଗଙ୍କ ନାମରେ ଭଣିତ ହୋଇଥିବା ଭଜନ ଗୁଡ଼ିକ ମିଳି ନାହିଁ । ତେଣୁ ଏହା ନିଶ୍ଚିତ ଯେ, ସାଲବେଗ ଯେଉଁ ଭଜନ ରଚନା କରି ଗାନ କରୁଥିଲେ, ସେ ଗୁଡ଼ିକୁ ପୁରୀକୁ ଯାତ୍ରୀଭାବରେ ଆସୁଥିବା ବିଭିନ୍ନ ଅଞ୍ଚଳର ଭକ୍ତଜନତା କଣ୍ଠସ୍ଥ କରି ମନେ ରଖୁଥିଲେ ଏବଂ ସୁବିଧା ଅନୁସାରେ ତାକୁ ପୋଥିରେ ଲେଖି ରଖୁଥିଲେ । ଲିପିକାରମାନଙ୍କ ଦ୍ୱାରା ଲେଖିବା ବେଳେ ମୂଳରଚନାରୁ ଗୋଟିଏ ଦୁଇଟି ଶବ୍ଦ ପରିବର୍ତ୍ତିତ ହେଉଥିବା ମଧ୍ୟ ଅସମ୍ଭବ ନୁହେଁ । ହୁଏତ କୌଣସି କୌଣସି ଭକ୍ତ ଦ୍ୱାରା ସାଲବେଗଙ୍କ ଭଜନ ଭିନ୍ନ ଭିନ୍ନ ଭାବରେ ଗବାଯାଇଥିବ ! ତା'ର ପ୍ରମାଣ ମଧ୍ୟ ସାଲବେଗଙ୍କ ଭଜନରୁ ମିଳୁଛି ।

ଭକ୍ତକବି ବନମାଳୀ ସାଲବେଗଙ୍କ ମୃତ୍ୟୁର ପ୍ରାୟ ଶହେବର୍ଷ ପରେ ଆବିର୍ଭୂତ ହୋଇଥିଲେ । ସେ ମଧ୍ୟ ସାଲବେଗଙ୍କ ପରି ସରଳ ସୁବୋଧ ସର୍ବଜନପ୍ରିୟ ଭାଷା ଓ ରାଗରାଗିଣୀରେ ସମନ୍ୱିତ କରି ପଦ୍ୟମାନ ରଚନା କରିଥିଲେ । ପୂର୍ବବର୍ତ୍ତୀ କବିମାନଙ୍କ ଭାଷା ଭାବ ଶୈଳୀର ପ୍ରଭାବ ପରବର୍ତ୍ତୀ କବିମାନଙ୍କ ରଚନାରେ ପଡ଼ିଥାଏ । କାଳିଦାସ, ଭବଭୂତି, ବାଣଭଟ୍ଟ, ମାଘ, ଶ୍ରୀହର୍ଷ ଓ ଜୟଦେବଙ୍କ ରଚନାର ପ୍ରଭାବ ଯେତେବେଳେ ତାଙ୍କ ପରବର୍ତ୍ତୀ କବିମାନଙ୍କ ରଚନାରେ ସ୍ପଷ୍ଟ ପ୍ରତିଫଳିତ ହୋଇଛି, ସେତେବେଳେ ଗୋଟିଏ ସ୍ଥାନରେ ବାସ କରୁଥିବା ତଥା ଏକଭାବଧାରାରେ କବିତା ରଚନା କରିଥିବା ଜଣେ କବିଙ୍କ ରଚନାର ପ୍ରଭାବ, ଶହେବର୍ଷ ପରବର୍ତ୍ତୀ ଜଣେ କବିଙ୍କ ରଚନାରେ ପଡ଼ିବା ଆଦୌ ଅସମ୍ଭବ ନୁହେଁ । ଏହା ସାଧାରଣ ନିୟମ ତଥା ଶାଶ୍ୱତ ସତ୍ୟ ।

ସାଲବେଗ କୌଣସି ନିର୍ଦ୍ଦିଷ୍ଟ ଧର୍ମସମ୍ପ୍ରଦାୟର ଭକ୍ତକବି ହୋଇ ନଥିବାରୁ, ତାଙ୍କ ରଚନା ଗୁଡ଼ିକ ସମ୍ପାଦିତ ହୋଇ ଗୋଟିଏ ପୋଥିରେ ରହିନାହିଁ । ତେଣୁ ତାଙ୍କ ଭଜନ ଗୁଡ଼ିକ ଅନ୍ୟ କବିମାନଙ୍କ ନାମରେ ଭଣିତ ହୋଇଥିବାର ପ୍ରମାଣକୁ ସହଜରେ ଏଡ଼ାଇ ହେବନାହିଁ । ଯେ କୌଣସି ସୂତ୍ରରୁ ହେଉ ପଛକେ, ବନମାଳୀଙ୍କ ରଚନାରେ ଥିବା କେତୋଟି ପଦ୍ୟ ସାଲବେଗଙ୍କ ରଚନା ବୋଲି ମିଳୁଥିବାରୁ, ଐତିହାସିକ ସମାଲୋଚନାର ପରିପ୍ରେକ୍ଷୀରେ ସେ ଗୁଡ଼ିକର ବିଚାର ହେବା ବାଞ୍ଛନୀୟ ।

ଉଭୟ କବି ସାଲବେଗ ଓ କବି ବନମାଳୀଙ୍କ ପକ୍ଷରୁ ସାକ୍ଷ୍ୟଦେବା ପାଇଁ ଆମ ଆଗରେ କେହି ନାହାନ୍ତି । କେବଳ ପ୍ରାଚୀନ ପୋଥିପତ୍ର ଓ ଜନସାଧାରଣଙ୍କ ସ୍ମୃତିହିଁ ଆମ ଆଲୋଚନାର ସମ୍ବଳ । ତେଣୁ ଭାଷା, ଭାବ ଓ ଶୈଳୀର ସାମଞ୍ଜସ୍ୟକୁ ଭିତ୍ତିକରି ଆମ୍ଭେ ଆଲୋଚନାରେ ପ୍ରବୃତ୍ତ ହେଉଥାଉଁ ।

ଆହୁରି ମଧ୍ୟ ସମୟର ବ୍ୟବଧାନକୁ ଅସ୍ୱୀକାର କରିହେବ ନାହିଁ । ପୂର୍ବବର୍ତ୍ତୀ କବିଙ୍କ ରଚନାର ପ୍ରଭାବ ପରବର୍ତ୍ତୀ କବିଙ୍କ ରଚନା ଉପରେ ପଡ଼ିବ ହିଁ ପଡ଼ିବ । ପୁଣି ଏକଧରଣର କବିତା ରଚନାରେ ଏହା ଅବଶ୍ୟମ୍ଭାବୀ । 'ସାଲବେଗଙ୍କ ସୃଷ୍ଟିସମ୍ପଦ'ର ପ୍ରାଚୁର୍ଯ୍ୟ ନ ଥିଲା' ବୋଲି ଯଦି ଗ୍ରହଣ କରାଯାଏ, ତା' ହେଲେ ଯେଉଁ କେତୋଟି ସଙ୍ଗୀତ ଦରିଦ୍ର ଯବନ କବି ଲେଖି ଯାଇଛନ୍ତି ତାହା ତାଙ୍କ 'ପ୍ରଚଣ୍ଡ ପ୍ରତିଭାର ପରିଚୟ' କିପରି ଦେବ ?

ସାଲବେଗଙ୍କ ନାମରେ ପାଞ୍ଚଦଶଟି ମାତ୍ର ପଦ୍ୟ ସହିତ ଆମ୍ଭେମାନେ ପରିଚିତ ଥିଲୁ । ବିଭିନ୍ନ ପୋଥି ତଥା ଜନଶ୍ରୁତିରୁ ଯେଉଁ କବିତା ଗୁଡ଼ିକ ମିଳିଲା ତା'ର ସଂଖ୍ୟା ଶତାଧିକ ହେବାକୁ ବସିଲାଣି । ଆହୁରି କେତୋଟି ସାଲବେଗଙ୍କ ନାମରେ ଭଣିତ କବିତା ମିଳିଲାଣି । ଆଲୋଚନାର ସ୍ତର ଯେତିକ ଉନ୍ନତ ହେବ, ଉଭୟ ସାଲବେଗ ଓ ବନମାଳୀଙ୍କ ସମ୍ବନ୍ଧୀୟ ଗବେଷଣା ନିରପେକ୍ଷ ତଥା ତଥ୍ୟ ମୂଳକ ହୋଇପାରିବ ।

ସାଲବେଗଙ୍କ ନାମରେ ଭଣିତ 'କାହ୍ନାଁଗଲେ ମୁରଲୀ ଫୁକା' ଶୀର୍ଷକ ଦୁଇଟି ପଦ୍ୟ ମିଳୁଛି । ଦୁଇଟିଯାକ ପଦ୍ୟ ରାଜ୍ୟ ସଗ୍ରହାଳୟ ପୋଥି ଭଣ୍ଡାରରେ ଥିବା ଭିନ୍ନ ଭିନ୍ନ ଦୁଇଟି ଅଞ୍ଚଳର ପୋଥିରୁ ମିଳୁଛି । ପଦ୍ୟ ଦୁଇଟି ଭିନ୍ନ ଭିନ୍ନ ଗାୟକଙ୍କ ଦ୍ୱାରା ଖୁବ୍ ସମ୍ଭବତଃ ଗାନ କରାଯାଇଥିବାରୁ ସେଥି ମଧ୍ୟରେ କେତେକ 'ପାଦ' ଓଲଟ ପାଲଟ ଓ କେତେକ ପାଦ ଓ ପଦ ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇ ଯାଇଛି ।

ଅବିକଳ ଶୀର୍ଷକ ପଦ୍ୟଟିଏ ବନମାଳୀଙ୍କ ରଚନାରେ ମିଳୁଛି । କିନ୍ତୁ ଉଭୟ କବିଙ୍କର ସମୁଦାୟ 'ପାଦ' ଗୁଡ଼ିକ ଏକାପରି ନୁହେଁ । ବନମାଳୀଂକ ନାମରେ ଭଣିତ ପଦ୍ୟଟି ହେଉଛି—

"କାହ୍ନାଁ ଗଲେ ମୁରଲୀ ଫୁକା ।
ଯୁବତୀ ରସିଆ କାମିନୀ ରଙ୍କା ।
ତ୍ରିଭଙ୍ଗୀ ଭଙ୍ଗୀରେ ମୁରଲୀବଜାଇ
ଡ଼ାକୁଥାନ୍ତି ଆସ ଆସ ରାଧିକା ॥
ଗୋପପୁରେ ପଶି ଗୋପୀଙ୍କ ମନ୍ଦିରେ
ଦଧି ଦୁଧ ଖାଇ ଛୁଣ୍ଡାନ୍ତି ଶିକା ।
ଯମୁନା କୂଳରେ ବସ୍ତ୍ର ଗୋରିଙ୍କର
କେଳି କଦମ୍ବରେ ବାନ୍ଧେ ପତାକା ।
ମୀନ ଅବତାରେ ସାଗର ଭିତରେ
ବ୍ରହ୍ମାଙ୍କ ଛଳରେ ମାରିଲେ ଶଙ୍ଖା ।
ତ୍ରେତୟା ଯୁଗରେ ରାମ ଅବତାରେ
ଜାନକୀ ଛଳରେ ଭାଙ୍ଗିଲେ ଲଙ୍କା ॥
ପାଦ ପାଣି ବଙ୍କା ନୂପୁର ହିଁ ବଙ୍କା
ଚୂଳହିଁ ବଙ୍କା ତା ଚାହାଣି ବଙ୍କା ।
ବଙ୍କିମ ଅଧରେ ମୁରଲୀ ବଜାଇ
ଡ଼ାକୁଥାନ୍ତି ଆସ ଆସ ରାଧିକା ॥

ଯମୁନା କୂଳରେ                    କଦମ୍ବ ମୂଳରେ
ହର ଗଉଷୁଏ ପୂଜ ବାଲୁକା ।
ବୋଲେ **ବନମାଳୀ**                    ସେ ପାଦେ ଶରଣ
ଝୁରି ଝୁରି ତନୁ କ୍ଷୀଣ ରାଧିକା" ।।

( ବୁକ୍‌ସ ଏଣ୍ଡ ବୁକ୍‌ସ ପ୍ରକାଶିତ କବି ବନମାଳୀ
ଓ ତାଙ୍କ ପଦ୍ୟାବଳୀ )

+ + +

ସାଲବେଗଙ୍କ ନାମରେ ଭଣିତ—

୧– କାହ୍ନିଁ ଗଲେ ମୁରଲୀ ଫୁଙ୍କା ।
ଯୁବତୀ ରସିକ କାମିନୀ ରଙ୍କା ।।
ପାଦପାଣି ବଙ୍କା                    ନୟନ ବଙ୍କା
ଅଧର ବଙ୍କା ।।
ବାଙ୍କ ଶ୍ରୀ ଅଧରେ ମୁରଲୀ ବଜାଇ
ଡାକୁଛନ୍ତି ଆସ ଆସ ରାଧିକା ।
ବସ୍ତ୍ର ଚୋରିକରି କେଳିକଦମ୍ବରେ ବାନ୍ଧ ପତାକା ।।
ତ୍ରେତୟା ଯୁଗରେ ରାମ ଅବତାରେ
ଜାନକୀ ଛଳରେ ଭାଙ୍ଗିଲେ ଲଙ୍କା ।
କହେ ସାଲବେଗ ବଂଶୀରେ ଶରଣ,
ଝୁରି ଝୁରି ତନୁ କ୍ଷୀଣ ରାଧିକା ।।

୨– କାହ୍ନିଁ ଗଲେ ମୁରଲୀ ଫୁଙ୍କା ।
ଚୂଳ ବଙ୍କା ତାଙ୍କ ନୟନ ବଙ୍କା ।।
ଶ୍ରୀରଙ୍ଗ ଅଧରେ ମୁରଲୀ ବାଡ଼ୁଛି ସହଜେ ସେଇତ ଅଟଇ ବଙ୍କା ।।
ଆମ୍ଭେ ସର୍ବସଖୀ ଯମୁନାକୁ ଗଲୁ,
ଶଙ୍କରଙ୍କୁ ପୂଜ ପାଇଲୁ ଲଙ୍କା ।।

ଆଣ୍ଠୁକ ପାଣିରେ କୁମ୍ଭ ନ ବୁଡ଼ଇ,
ତାହା ଦେଖି ମନେ ହେଲା ତାଟକା ।।
ଆମ୍ଭେ ସବସଖୀ ନାଇ ପାଇଁ ଗଲେ,
ବାଟ ଜଗି ପୁଣି ମାରନ୍ତ ଟେକା ।
କଂସକୁ କହିବୁ ଘଟ ମରାଇବୁ,
କାଲି ଛଡ଼ାଇବୁ ଷାଠିଏ ଟଙ୍କା ।।
ତ୍ରେତୟା ଯୁଗରେ ରାମ ଅବତାରେ,
ଜାନକୀ ଛଳେ ଯା ବନ୍ଧିଲେ ଲଙ୍କା ।
କହେ ସାଲବେଗ ଜାତିରେ ଯବନ,
ଝୁରି ଝୁରି ତନୁ କ୍ଷୀଣ ରାଧିକା ।।
(ଗ୍ରନ୍ଥମନ୍ଦିର ଦ୍ୱାରା ପ୍ରକାଶିତ ଭକ୍ତକବି ସାଲବେଗ
ଜୀବନୀ ଓ ପଦ୍ୟାବଳୀ )

ଏହା ବ୍ୟତୀତ ଆହୁରି ଗୋଟିଏ ପ୍ରକାର ଶୈଳୀରେ ପ୍ରସ୍ତୁତ ପଦ୍ୟଟି ସାଲବେଗଙ୍କ ନାମରେ ଭଣିତା ହୋଇଛି—

"କାହ୍ନିଁଗଲେ ମୁରଲୀ ଫୁଙ୍କା । ଯୁବତୀ ରସିକ କାମିନୀରଂକା ।
ପାଦପାଣି ବଂକା ନେପୂର ବଂକା, ଚଳଇ ବଂକା ତା ନୟନ ବଂକା ।।
ଶ୍ରୀରଙ୍ଗ ଅଧରେ ମୁରଲୀ ବଜାଇ, ସହଜେ ଅଟଇ ସେ ପୁଣି ବଂକା ।
ଆମ୍ଭେ ସବସଖୀ ଯମୁନାକୁ ଗଲେ, ଶଂକର ଭଜଇ ପୂଜ ବାଲୁକା ।।
ଏବେ ପୁଣି ଲୋକହସା କରୁଅଛ, ନରନ୍ତରେ ବୈଂଶୀ କରୁଛ ଡ଼କା ।
ମୀନ ଅବତାରେ ତ୍ରେତୟା ଯୁଗରେ ସାଗର ଭିତରେ ମାରିଲ ଶଙ୍ଖା ।।
ଆମ୍ଭେ ସବସଖୀ ଯମୁନାକୁ ଗଲେ, ତାହାର ଯୋଗୁ ନ ଲଗଇ ଦକା ।
ରାମ ଅବତାରେ ତ୍ରେତୟା ଯୁଗରେ, ଜାନକୀ ଛଳେ ବିଧ୍ୱଂସିଲେ ଲଙ୍କା ।।
କହେ ସାଲବେଗ ଜାତିରେ ଯବନ,
ଝୁରି ଝୁରି ତନୁ କ୍ଷୀଣ ରାଧିକା ।।
( ଗ୍ରନ୍ଥମନ୍ଦିର ପ୍ରକାଶିତ ଭକ୍ତକବି ସାଲବେଗ
ଜୀବନୀ ଓ ପଦ୍ୟାବଳୀ )

ସାଲବେଗଙ୍କ ନାମରେ ଭଣିତ ଏହି ଜନପ୍ରକାର 'କାହ୍ନି ଗଲେ ମୁରଲୀ ଫୁଙ୍କା' ପଦ୍ୟରୁ ବେଶ୍ ଧାରଣା କରି ହୁଏ ଯେ, କବିଂକ ରଚନା ଭିନ୍ନ ଭିନ୍ନ ଶ୍ରଦ୍ଧାଳୁ ଭକ୍ତଙ୍କ ଦ୍ୱାରା ବଭିନ୍ନ ପ୍ରକାର ଗାନ କରାଯାଇଛି ଏବଂ ବନମାଳୀଙ୍କ ଭଣିତାରେ ଥିବା ପଦ୍ୟଟି ଉପରେ ସାଲବେଗଂକ ଭଣିତାରେ ଥିବା ଗୀତଟିର ପ୍ରଭାବ ଅତ୍ୟନ୍ତ ସୁସ୍ପଷ୍ଟ ।

"ମୁରଲୀ ତୋରେ ଶରଣ ଗଲି" ଶୀର୍ଷକ ବନମାଳୀଙ୍କ ପଦ୍ୟଟି ଉପରେ ସାଲବେଗଂକ ପଦ୍ୟର କପରି ସାମଞ୍ଜସ୍ୟ ରହିଛି, ତା'ର ଉଦାହରଣ ଏଠାରେ ପ୍ରସ୍ତୁତ କରାଯାଇ ପାରେ ।

ବନମାଳୀ:—"ମୁରଲୀ, ତୋରେ ଶରଣ ଗଲିରେ, ମୁରଲୀ ।
ହନେ ନ ଡାକବୁ ରାଧିକା ବୋଲି ରେ ॥
ସେ ନନ୍ଦସୁତ ମୁଁ ରାଜକୁମାରୀ ।
ବଂଶୀ ଦେଲୁ ସିନା ପରତେ କରି ରେ ॥
ଲୁଚି ଲୁଚି ଯାଏ ସଖୀ ସଙ୍ଗତେ ।
କ ଦ୍ୱେଷ ଚହ୍ଲିଲୁ ମୁରଲୀ ମୋତେ ରେ !
ଜାତି ତୋର କଣ୍ଟା ବାଉଁଶ-ଖଣ୍ଡ ।
ଧ୍ୱନି ସଙ୍ଗେ ଥାଇ ପଞ୍ଚମକାଣ୍ଡରେ ॥
କୃଷ୍ଣହସ୍ତୁ ତୋତେ କେ ଦ୍ୟନ୍ତା ମୋତେ ।
ଭସାଇ ଦଅନ୍ତି ଯମୁନା ସ୍ରୋତେ ରେ ॥
ମୁରଲୀରେ ତୋର ଏତେ ବଡ଼ାଇ ।
ପଞ୍ଚବ୍ରତାଦନ୍ତ ଦେଉ ଛଡ଼ାଇ ରେ ॥
ବନମାଳୀ ବୋଲେ ଯୋଡ଼ିଣ କର । ମୁରଳୀଟି ଦୂଶ ସିନା ତୁମର ରେ" ॥

ବନମାଳୀଙ୍କର ଏହି ପଦ୍ୟଟି ଉପରେ ସାଲବେଗଙ୍କ "କାହ୍ନୁ ହେ ବଂଶୀ କେଦେଲୁ ତୋତେ" ଓ "ମୁରଲୀ ତୋର ଶରଣ ଗଲି ରେ, ମୁରଲୀ" ପଦ୍ୟ ଦୁଇଟିର ପ୍ରଭାବ କେତେକାଂଶରେ ପଡ଼ିଥିବାର ଦେଖାଯାଏ । ପଦ୍ୟ ଦୁଇଟି ହେଉଛି—

"କାହ୍ନୁ ହେ, ବଂଶୀ କେ ନେଲା ତୋତେ ।
ରାଧା ରାଧା ବୋଲି ଡ଼ାକେ ନିରତେ ॥
ବଂଶୀ କେ ଦଅନ୍ତା ମୋହର ହସ୍ତେ ।
ଭସାଇ ଦଅନ୍ତି ଯମୁନା ତଟେ ॥
କୁଳଛଡ଼ା ବଂଶୀ କୁଳ, ଛଡ଼ାଇ ।
ବଂଶୀ ସିନା ଦେଲା ପ୍ରୀତି ବଢ଼ାଇ ।
ତୁ ନନ୍ଦସୁତ ମୁଁ ରାଜ କୁମାରୀ ।
ବଂଶୀ ସିନା ଦେଲା ପରଚ କରି ॥
ଲୁଚି ଲୁଚି ଯାଇ ସଖୀ ସଙ୍ଗତେ ।
ଖୋଜି ଖୋଜି ବଂଶୀ ଡାକଇ ମୋତେ ।
ଗୋପପୁରେ ଗୋପୀ ନାହାନ୍ତି କେତେ ।
ମୋ ନାମ ଜାଣିଲା ବଂଶୀ କେମନ୍ତେ ।
ଜାତ ଚୋର ଝଣ୍ଟା ବାଉଁଶ ଖଣ୍ଡ ।
ତହିଁ ଚଢ଼ାଇଛୁ କୁସୁମ କାଣ୍ଡ ॥

ଅକଳଙ୍କ ଘରେ କୁଳଚନ୍ଦ୍ରମା ।
କହେ ଷାଲବେଗ ବଂଶୀ ଗାରମା" ॥

× × ×

ମୁରଲୀ ତୋରେ ଶରଣ ଗଲରେ, ମୁରଲୀ ।
ଆଉ ନ ଡ଼ାକବୁ ରାଧିକା ବୋଲି ରେ···
ଗୋପପୁରେ ଗୋପୀ ନାହାନ୍ତି କେତେ ।
ମୋ ନାମ ଜାଣିଲା ବଂଶୀ କେମନ୍ତେ ॥

× × ×

ଅକୁଳ ଘରେକୁ କୁଳଚନ୍ଦ୍ରମା ।
କହେ ଷାଲବେଗ ବଂଶୀ ଗାରିମା'' ॥

ସାଲବେଗଙ୍କ ନାମରେ ଭଣିତ ହୋଇଥିବା ଗୀତ ଦୁଇଟିକୁ ଆନୁଧାନ କଲେ, ସ୍ପଷ୍ଟ ଜଣାଯାଏ ଯେ, ପ୍ରକୃତରେ ଏହି ଦୁଇଟି ଯାକ ପଦ୍ୟ ଗୋଟିଏ ପଦ୍ୟର ଦୁଇଟି ଅଂଶ । ହୁଏତ ଅଞ୍ଚଳ ଭେଦ ତଥା ଗାୟକ ଭେଦରେ ଗୋଟିଏ ପଦ୍ୟ ଦୁଇଭାଗ ହୋଇ ଗାନ କରା ଯାଉଛି ! ପଦ୍ୟରେ ଥିବା ଏକପ୍ରକାର ଶବ୍ଦାବଳୀ ଯୋଜନା ଆମର ଅନୁମାନକୁ ଦୃଢ଼ କରାଇଥାଏ ।

ଆତୁର ମଧ୍ୟ କବି ବନମାଳୀଙ୍କ—

"ଶ୍ୟାମ ନାଗର ହେ ଏ ବେଶ ହୋଇବ ନାହିଁ ।
ଏ ବେଶ ହୋଇଲେ ପାଷାଣ ତରଳେ
ଯୁବତୀ ବଞ୍ଚିବେ କାହିଁ !
ଜରା ହୋଇଥିବ କଦମ୍ବର ମୂଳେ ନଟବର ବେଶ ହୋଇ ।
ଦେଉଥିବ ଯେବେ ମୋହନ ମୁରଲୀ ଅଧରେ ଚୁମ୍ବିବ ନାହିଁ ।।
ପିନ୍ଧିଥିବ ଯେବେ ପୀତାମ୍ବର ତୁମ୍ଭେ ଭୂମିରେ ଲୋଟିବ ନାହିଁ ।
ହସୁଥିବ ଯେବେ ମୃଦୁ ମୃଦୁ ହୋଇ ତେରଛେ ଚାହିଁବ ନାହିଁ ।।
ଦେଉଥିବ ଯେବେ ଚନ୍ଦନର ବିନ୍ଦୁ ଗୋରୋଚନା ଥିବ ନାହିଁ ।
ବାନ୍ଧିଥିବ ଯେବେ ତ୍ରିଭଙ୍ଗିମା ଚୂଳ ଚନ୍ଦ୍ରିକା ଖୋଷିବ ନାହିଁ ।।
ଯେତେ ବେଶ ତୋତେ ମନା କଲି ଶ୍ୟାମ ତେତେ ବେଶ ହେଲୁ ତୁହିଁ
ବୋଲେ ବନମାଳୀ ଶୁଣ ଗୋ ରାଧିକେ, ଏ ବେଶ ତୋହର ପାଇଁ ।।

ଗୀତଟି ସହିତ ସାଲବେଗଙ୍କ "ଯାଅ ତୁମ୍ଭେ ନନ୍ଦ କହ୍ନାଇ" ଗୀତଟିକୁ ତୁଳନା କଲେ ସ୍ପଷ୍ଟ ଜଣାଯାଏ ଯେ ଗୀତଟିର ଭାବଗତ ପ୍ରଭାବ ବନମାଳୀଙ୍କ ଗୀତରେ ନିଶ୍ଚିତ ଭାବରେ ପଡ଼ିଛି ।

"ଯାଅ ତୁମ୍ଭେ ନନ୍ଦ କହ୍ନାଇ, ମୋ ନାମେ ମୁରଲୀ ବାଇବ ନାହିଁ ।
ଶିରରେ ତୁମ୍ଭର ମୟୂର ପିଞ୍ଛ, ବାମେ ଆଉଜାଇ ବାନ୍ଧିବ ନାହିଁ ।।
ବାମେ ଆଉଜାଇ ବାନ୍ଧିବ ଯେମନ୍ତ ପୁଞ୍ଜା ପୁଞ୍ଜା ମଲ୍ଲୀ ଖଞ୍ଜିବ ନାହିଁ ।
କଟୀରେ ତୁମ୍ଭର କ୍ଷୁଦ୍ର ଘଣ୍ଟିକା ବେଗ ବେଗ ହୋଇ ବାଜିବ ନାହିଁ ।।

ପଯ୍ଯରେ ତୁମ୍ଭର ରତ୍ନକଠାଉ ଧୀର ଧୀର ହୋଇ ଗ୍ଭଲିବ ନାହିଁ,
ଧୀର ଧୀର ହୋଇ ଗ୍ଭଲିବ ଯେମନ୍ତେ ପୀତାମ୍ବର ଖେଦ ପିନ୍ଧିବ ନାହିଁ ।
ନାଚ ନାଚ ଆସୁଥାନ୍ତି ନାନା ରଙ୍ଗେ ଚହିଁକି ଗୋପିକା ହୋଇଲେ ବାଇ
କହେ ସାଲବେଗ ଜାତିରେ ଯବନ ରାଧାକୃଷ୍ଣ ପାଦ ହୃଦରେ ଧ୍ୟାୟି" ॥

କବି ବନମାଳୀଙ୍କ ରଚନାରେ ଥିବା "ବାଟ ଛାଡ ସୁହାଟ ନାଗର" ଗୀତଟିର କେତେକ ଶବ୍ଦ ଓ ପଦ ପରିବର୍ତ୍ତିତ ହୋଇ ସାଲବେଗଙ୍କ ରଚନାରେ ମିଳୁଛି । ଗୀତ ଦୁଇଟିକୁ ଏକତ୍ର ରଖି ଆଲୋଚନା କଲେ ଉଭୟ କବିଙ୍କ ନାମରେ ଭଣିତ ଗୀତରେ କେତେକ ଦୋଷ ପରିଲକ୍ଷିତ ହେବା ସଙ୍ଗେ ସଙ୍ଗେ, କେତେକ ପୁଣ ମଧ୍ୟ ପରିଦୃଷ୍ଟ ହୁଏ ।

ବନମାଳୀ—

ବାଟ ଛାଡ ସୁହାଟ ନାଗର, ଯମୁନାକୁ ଯିବି ମୁଁ ଆଣିକ !

ବାଟ ପାଇ ଯେବେ ଲଟ ଲଗାଇବ
ପ୍ରତିବନ୍ଧା ଦେବି ମଥାମଣିକ
ଘରେ ମୋ ନଣନ୍ଦ ଅଟେ ବଡ଼ମନ୍ଦ
ଶାଶୁ ମୋ ଅଟଇ ଯପଚଣୀ କ ॥
ଆହେ ଗିରି ଟେକା ନ କର ତୁ ଡକା
ତୁମ୍ଭ ଲାଗି ନ ଆସିବି ଏଣିକ ॥
ମୁହିଁ ବୃଷଭାନୁ ନୃପତିଙ୍କ ଜେମା
ଆନ ପ୍ରାୟ ମୋତେ ଅଛ ମଣିକ ?
ଧରି ମୋ ଅଞ୍ଚଳ କରୁଛ ଜଞ୍ଜାଳ
ଡର ନାହିଁ ପର ଭୂଆଷୁଣୀ କ ॥
ନନ୍ଦ ମହାଖୁଣ୍ଡ ପୁଅ ଏଡେ ବଡ଼
ଦେଖିଥାଅ ଗୋପ ଗଉଡୁଣୀ କ
କ୍ଷୀର ଦେଲା ବେଳେ ପୂତନା ମାଇଲ
ସ୍ତ୍ରୀଘାତ୍ୟା ଦୋଷ ନ ବଛିଲ କ ?

ମୁଁ ଯେବେ ଏଥର ଆସିବ ପାଣିକ
ସଙ୍ଗେ ଆଣିଥିବ ସଖୀଶ୍ରେଣୀଙ୍କି
ବୋଲେ ବନମାଳୀ ଶୁଣ ଠାକୁରାଣୀ
ନରାଗ ନ କର ବେନୁପାଣିଙ୍କି" ॥

ସାଲବେଗ—

"ବାଟ ଛାଡ଼ ସୁଘଟ ନାଗର,
ଯମୁନାକୁ ମୁହିଁ ଯିବ ପାଣିକ ॥
ବାଟ ପାଇଁ ଯେବେ ଲଟ ଲଗାଇଛ
ପ୍ରତିବନ୍ଧା ଦେବ ମଥାମଣି କ ॥
ମଥାନରେ ମନ୍ଥନ ପଥରେ ଗମନ
ବାଟ ଓଗାଳୁଛ କାହିଁ ପାଇଁକ ?
ଶାଶୁ ଗାଳିଦେବ ନଣନ୍ଦ ଚଳବ
ବୋଲିବେ ମୋ ବନ୍ଧୁ ଦୋଷରୁଣୀ କ ?
ମୁହିଁ ବୃଷଭାନୁ ନୃପତିର ସୁତା
ତୋହ ପର ମୋତେ ମଣିଅଛ କ !
ଧରିଛ ଅଞ୍ଚଳ କରୁଛ ଜଞ୍ଜାଳ
ଡରନାହିଁ ପରଭୂଆଷୁଣୀ କ ।
ଏହି ଗୋପପୁରେ କଂସରାଜା ଡ଼ରେ
ସେ କଥା ତୋହର ମନେ ନାହିଁକ ?
ଆରେ ଗିରଟଟକା ନକର ଭୁଡକା
ତୋହ ଯୋଗୁ ନାଶ ଯିବ ମୁହିଁକ ॥
ରାଧା ବାଣୀ ଶୁଣି ବୋଲେ ବେଣୁ ପାଣି
ନଷ୍ଟୁର ବଚନ କହ ଏଡ଼କ ।
କହେ ସାଲବେଗ ଶୁଣ ଠାକୁରାଣୀ
ନରାଗ ନକର କମ୍ବୁପାଣି କ" ॥

ଉଭୟୁଯାକ ପଦ୍ୟ ପାଠକଲେ ଜଣାଯାଏ ଯେ, ସାଲବେଗଙ୍କ କବିତାଟିକୁ କେତେକ ପରିବର୍ତ୍ତନ କରି ବନମାଳୀଙ୍କ ନାମରେ ଭଣିତା କରାଯାଇଛି । ଉଭୟ ପଦ୍ୟ ଦୁଇଟି ତାଳପତ୍ର ପୋଥିରୁ ସଂଗ୍ରହ କରାଯାଇଛି । ଉଭୟ ପଦ୍ୟର ରଚନା କାଳ ମଧ୍ୟରେ ଶତାଧିକ ବର୍ଷ ବ୍ୟବଧାନ ଥିବାରୁ, ପରବର୍ତ୍ତୀ କବି ବନମାଳୀ ଦାସଙ୍କ ଭଣିତାରେ ପଦ୍ୟଟି ଅଧିକ ରୁଚି ସମ୍ପନ୍ନ ହୋଇଥିବାର ଦାବୀ କରାଯାଏ । ତ୍ରୁଏତ ସାଲବେଗଙ୍କ ନାମରେ ଭଣିତ ପଦ୍ୟଟି ଅଞ୍ଚଳ ଭେଦରେ ଗାୟକଙ୍କ ମୁଖରେ ଭିନ୍ନ ଭିନ୍ନ ହୋଇଥିବ । 'ସୁହଟ' ଓ 'ସୁଘଟ' ଶବ୍ଦ ଦୁଇଟି ଗାୟକ ମୁଖରେ ଭିନ୍ନ ହେବା ମଧ୍ୟ ଅସମ୍ଭବ ନୁହେଁ । 'ଘରେ ମୋ ନଣନ୍ଦ ଅଛେ ବଡମନ୍ଦ ଶାଶୁ ମୋ ସପତଣୀ' ପଦଟି କିହାତ ଅସ୍ୱାଭାବିକ ଚିନ୍ତା ଧାରାର ଦ୍ୟୋତକ କହି ଅନ୍ୟ ଆଲୋଚକ ତାହାର ଯାଥାର୍ଥ୍ୟ ପ୍ରତିପାଦନ କରି ଯୁକ୍ତି କରିଛନ୍ତି । ସେହି ପଦଟି ପରିବର୍ତ୍ତେ ସାଲବେଗଙ୍କ ରଚନାରେ ଥିବା—" ଶାଶୁ ଗାଳଦେବ ନଣନ୍ଦ ଚଳିବ ବୋଲିବେ ମୋ ବଢ଼ୁ ଦୋଗୁରୁଣୀ କି" । ପଦଟି ବେଶ୍ ଅର୍ଥଦ୍ୟୋତକ ତଥା ଭାଗବତ ଓ ହରିବଂଶ ଆଦି ପୁରାଣ ଦ୍ୱାରା ସମର୍ଥିତ ହୁଏ । ପୁରାଣମାନଙ୍କରେ ଶ୍ରୀରାଧାଙ୍କୁ 'ଦୋଗୁରୁଣୀ' ରୂପେ ଦୋଷ ଦେବା ଶାଶୁ ଓ ନଣନ୍ଦଙ୍କର ଏକପ୍ରକାର ଅଭ୍ୟାସ ପଡ଼ିଯାଇଥିଲା । ସେମାନେ ରାଧାଙ୍କ ଦୋଷ ଦେଖାଇ ଚନ୍ଦ୍ରସେଣା ଆଗରେ ପ୍ରମାଣିତ କରାଇବା ପାଇଁ ସବୁବେଳେ ଚେଷ୍ଟା କରୁଥିଲେ । ସେଥିପାଇଁ ଶ୍ରୀକୃଷ୍ଣଙ୍କୁ କାଳୀ, ଭୃତ, ନାବିକ, ବଣିକ ବୈଦ୍ୟ ଆଦି ବେଶ ଧରିଥିବାର ବର୍ଣ୍ଣନା କାବ୍ୟମାନଙ୍କରେ ମିଳିଥାଏ । ତେଣୁ ସେହି ପଦଟି ଅସମୀଚୀନ ବୋଲି ମନେ ହୁଏନାହିଁ । ଆହୁରିମଧ୍ୟ "ଏହି ଗୋପପୁରେ କଂସରାଜା ଡରେ ସେ କଥା ତୋହର ମନେ ନାହିଁ କି" ପାଦଟି ଦ୍ୱାରା ଶ୍ରୀ ରାଧା ଛଳକୋପ ପ୍ରକାଶ କରି ଶ୍ରୀକୃଷ୍ଣଙ୍କୁ ଭୟ ଦେଖାଇ ଥିବାର ପ୍ରମାଣ ଉପସ୍ଥାପିତ କରୁଛି । ତଦ୍‌ବ୍ୟତୀତ ସାଲବେଗଙ୍କ ନାମରେ ଭଣିତ 'କାହିଁଗଲେ ମୁରଲୀ ଫୁଙ୍କା' ପଦ୍ୟରେ ଥିବ 'କଂସକୁ କହିବୁ ଗ୍ରୁଟ ମରାଇବୁ କାଲି ତଣ୍ଡାଇବୁ ଷାଠିଏ ଟଙ୍କା' ଉକ୍ତିକୁ ପ୍ରସ୍ତୁତ ପଦଟି ସମର୍ଥନ ଜଣାଇଥାଏ ।

"ନିବାଣ ନ କର ବେନୁ ପାଣିଙ୍କି" 'ପାଦ'ରେ ଥିବା 'ବେନୁପାଣି' ଶବ୍ଦ ରାଧାଂକ ପକ୍ଷରେ ଅର୍ଥ ଦ୍ୟୋତକ ହେଉଥିଲେ ହେଁ, ଏଠାରେ ଶ୍ରୀରାଧା ଏହା କହୁ ନାହାନ୍ତି । କବି ନିଜେ ପ୍ରଭୁଙ୍କ ମହତ୍ତ୍ୱ ପ୍ରଖ୍ୟାପନ ଅର୍ଥରେ ଶ୍ରୀରାଧା ଠାକୁରାଣୀଙ୍କୁ ବୁଝାଇବାକୁ ଯାଇଛନ୍ତି । 'ବେନୁପାଣି' ଶବ୍ଦ ଅପେକ୍ଷା 'କମ୍ବୁପାଣି' ଶବ୍ଦଟି ଭକ୍ତକବିଙ୍କ ପକ୍ଷରେ ଅଧିକ ମହତ୍ତ୍ୱପୂର୍ଣ୍ଣ । ତାଙ୍କ ଦୃଷ୍ଟିରେ ଶଙ୍ଖଧାରୀ ଜଗନ୍ନାଥ ବା ବିଷ୍ଣୁ ହିଁ ଶ୍ରୀକୃଷ୍ଣ ରୂପେ ବୃନ୍ଦାବନରେ ଲୀଳାମନୁଷ୍ୟରୂପ ଧାରଣ କରିଛନ୍ତି । ତେଣୁ 'ପୁରୁଷ' ରୂପୀ ଶ୍ରୀକୃଷ୍ଣଙ୍କ ସହିତ ମର୍ତ୍ତ୍ୟଲୋକରେ 'ପ୍ରକୃତି' ସ୍ୱରୂପିଣୀ ଶ୍ରୀରାଧାଙ୍କ ମିଳନ ଅବଶ୍ୟମ୍ଭାବୀ ବୋଲି ଭକ୍ତକବି ସୂଚନା ଦେବା ଉଦ୍ଦେଶ୍ୟରେ 'କମ୍ବୁପାଣି' ଶବ୍ଦ ବ୍ୟବହାର କରି ପଦଟିର ଧ୍ୱନ୍ୟାର୍ଥ ପ୍ରକାଶ କରିଛନ୍ତି ବୋଲି ମୋର ଧାରଣା !

ଏହି ପ୍ରସଙ୍ଗରେ 'ଜଗନ୍ନାଥ ହେ କିଛୁ ମାଗୁନାହିଁ ମୁଁ ତୋତେ' ଗୀତଟିର ତାତ୍ତ୍ୱିକ ବ୍ୟାଖ୍ୟା ହେବା ସମୀଚୀନ । ଗୀତଟି ଉଭୟ କବି ସାଲବେଗ ଓ କବି ବନମାଳୀଙ୍କ ନାମରେ ଭଣିତ ହୋଇଛି । ପଦ୍ୟଟିର ଭାବ ହେଉଛି—ଭକ୍ତକବି ଶ୍ରୀଜଗନ୍ନାଥଙ୍କଠାରେ ଜୀବନର ଗୋଟିଏ ମାତ୍ର ଅଳି କରିଛନ୍ତି । ତାହା ହେଉଛି—'ଶରଧାବାଲି ମଧ୍ୟରୁ ହାତେ ସ୍ଥାନ' । ସାଲବେଗଙ୍କ ପକ୍ଷରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ 'ହାତେ ଶରଧାବାଲି'ରୁ ମାଗିବା କେତେଦୂର ଯୁକ୍ତିଯୁକ୍ତ; ସେ ସମ୍ବନ୍ଧରେ ବିଚାର କରାଯିବା ଏକାନ୍ତ ଆବଶ୍ୟକ ।

ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର ଶେଷଦଶକରେ ଗଜପତି ରାମଚନ୍ଦ୍ର ଦେବଙ୍କ ରାଜଧାନୀ 'ବରୁଣାଇ ଗଡ଼' ଉପରେ ଆକ୍ରମଣ ମୋଗଲମାନଙ୍କ ପକ୍ଷରୁ ରାଜା ମାନସିଂହ କରିଥିଲେ, ସେଥିର ମୁଖ୍ୟଉଦ୍ଦେଶ୍ୟ ଥିଲା— ଶାସନ କ୍ଷମତା ହସ୍ତଗତ କରି, ଖୁରୁଧାରାଜ୍ୟ (ଓଡ଼ିଶା ଶାସକ)ଙ୍କୁ ମୋଗଲଶାସନ ପ୍ରତି ଆନୁଗତ୍ୟ କରାଇବା । ସେତେବେଳେ ଦେବ, ବ୍ରାହ୍ମଣମାନଙ୍କ ଉପରେ କୌଣସି ଅତ୍ୟାଚାର କରାଯାଇ ନଥିଲା ।

ବରଂ ରାଜାମାନସିଂହଙ୍କ ଶ୍ରୀମନ୍ଦିରର ସେବାୟତମାନେ ସମ୍ବର୍ଦ୍ଧନା ଜଣାଇ ଥିଲେ । ସେବାୟତମାନଙ୍କ ଦ୍ୱାରା ସମର୍ଥିତ ରାମଚନ୍ଦ୍ର ଦେବ (୧ମ)ଙ୍କୁ 'ଠାକୁର ରାଜା' ରୂପେ ରାଜାମାନସିଂହ ସମର୍ଥନ ଜଣାଇ, ମୋଗଲ ସାମ୍ରାଜ୍ୟର ଜଣେ ବନ୍ଧୁ ରୂପେ ଗ୍ରହଣ କରିଥିଲେ । ମାନସିଂହଙ୍କ ରାଣୀ ମଧ୍ୟ ବଡ ଦେଉଳ ମଧ୍ୟରେ 'ମୁକ୍ତିମଣ୍ଡପ' ଆଦି କରାଇଥିବାର ପ୍ରମାଣ 'ମାଦଳାପାଞ୍ଜି' ଆଦିରୁ ସମର୍ଥିତ ହୁଏ ।

କିନ୍ତୁ ମୋଗଲ ବାଦ୍‌ଶାହ ଆକବରଙ୍କ ପରେ ହିନ୍ଦୁମାନଙ୍କ ପ୍ରତି ମୋଗଲ ଶାସନର ନୀତି ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଥିଲା । ମୁଲ୍ଲାମାନେ ହିନ୍ଦୁଙ୍କର ମନୋବଳ ଭାଙ୍ଗି ଦେବାଲାଗି ଦେବବିଗ୍ରହର 'ଧ୍ୱଂସ ସାଧନ' ଓ ବ୍ରାହ୍ମଣମାନଙ୍କୁ ନିର୍ମମ ଭାବରେ ହତ୍ୟା କରିବାକୁ 'ଫରମାନ' ଜାରି କରିଥିଲେ । ତେଣୁ ହିନ୍ଦୁମାନଙ୍କ ପ୍ରତି ଉଦାରଭାବ ପୋଷଣ କରୁଥିବା ବାଦ୍‌ଶାହ ଆକବରଙ୍କ ପୁତ୍ର ହୋଇଥିଲେ ହେଁ ଜାହାଙ୍ଗୀର ମୁଲ୍ଲା ଓ ନିଜର ପ୍ରିୟତମା ବେଗମ୍‌ଙ୍କ ପ୍ରରୋଚନାରେ ହିନ୍ଦୁମାନଙ୍କ ପ୍ରତି କଠୋର ନୀତି ଅବଲମ୍ବନ କରିଥିଲେ । ତାଙ୍କ ସମୟରୁ ହିନ୍ଦୁମାନଙ୍କ ଉପରେ ନାନାପ୍ରକାର ଅତ୍ୟାଚାର ଆରମ୍ଭ ହୋଇଥିଲା । ହିନ୍ଦୁମାନଙ୍କର ଆରାଧ୍ୟ ଦେବବିଗ୍ରହ, ବିଶେଷତଃ ପ୍ରଖ୍ୟାତ ଦେବବିଗ୍ରହଗୁଡ଼ିକୁ ନଷ୍ଟଭ୍ରଷ୍ଟ କରିଦେବା ସଙ୍ଗେ ସଙ୍ଗେ ହିନ୍ଦୁଧର୍ମର ମାର୍ଗଦର୍ଶକ ତଥା ବ୍ରାହ୍ମଣମାନଙ୍କୁ ଧ୍ୱଂସ କରିଦେଇ, ବହୁସଂଖ୍ୟକ ହିନ୍ଦୁଙ୍କୁ ଇସଲାମ୍ ଧର୍ମରେ ଦୀକ୍ଷିତ କରାଇବା ମୋଗଲଶାସନର ନୀତି ରୂପେ ପରିଗଣିତ ହୋଇଥିଲେ । ତେଣୁ ଜାହାଙ୍ଗୀରଙ୍କ ଶାସନର ପ୍ରାକ୍‌କାଳରେ ଅତୀତରେ ତାଙ୍କର ବାଲ୍ୟବନ୍ଧୁଙ୍କୁ ବଙ୍ଗଳାର ସୁବେଦାର କରି ସେ (ଜାହାଙ୍ଗୀର) ପଠାଇ ଥିଲେ । ସେ ପ୍ରକାର ନିଯୁକ୍ତି ମୂଳରେ ଥିଲା—ଇସଲାମ ଧର୍ମର ପ୍ରସାର ତଥା ପୂର୍ବ ଭାରତରେ ହିନ୍ଦୁ ସଂସ୍କୃତିର ବିଲୋପସାଧନ । ଲାଲବେଗ୍ ସେହି ଉଦ୍ଦେଶ୍ୟକୁ ଚରିତାର୍ଥ କରିବା ଉଦ୍ଦେଶ୍ୟରେ କଟକରେ ଦୀର୍ଘଦିନ ରହି ପିପିଲୀର ମୋଗଲ ଛାଉଣି ସାହାଯ୍ୟରେ ଶ୍ରୀମନ୍ଦିର ଉପରେ ଆକ୍ରମଣ

ମାର୍ଗରେ ଥିବା ପ୍ରଖ୍ୟାତ ବ୍ରାହ୍ମଣ ଶାସନର ଧ୍ୱଂସ ସାଧନ ତଥା ହିନ୍ଦୁମାନଙ୍କ ସୁନ୍ଦରୀ ସ୍ତ୍ରୀ, କନ୍ୟାମାନଙ୍କ ଅପହରଣ କାର୍ଯ୍ୟରେ ଲଗି ରହିଲେ ।

ସେ ସମୟରେ ଦାନମୁକୁନ୍ଦପୁର (ଦାଣ୍ଡମୁକୁନ୍ଦ ପୁର) ଗୋଟିଏ ପ୍ରଖ୍ୟାତ ବ୍ରାହ୍ମଣ ଶାସନ ରୂପେ ପ୍ରସିଦ୍ଧ ଅର୍ଜନ କରିଥିଲା । ସେଠାରେ 'ସାତଶହ ବାଉନ' ବ୍ରାହ୍ମଣ ପରିବାରଙ୍କୁ ବସାଇ ରାଜା ମୁକୁନ୍ଦ ଦେବ ଗୋଟିଏ ମହତ୍ ଦାନ କରିଥିଲେ । ସେଠାରେ ବହୁ ଧୁରୀଣ ବିଦ୍ୱାନ, ବେଦାଧ୍ୟାୟୀ ତଥା ନୈଷ୍ଠିକ ବ୍ରାହ୍ମଣ ବାସ କରୁଥିଲେ । ଦାନମୁକୁନ୍ଦପୁର ଗ୍ରାମଟି ରାଜମାର୍ଗର ନିକଟରେ ଥିବାରୁ, ପିପିଲିରୁ ଆକ୍ରମଣ ଚଳାଇ ଲାଲବେଗ 'ଶାସନ'ଟିକୁ ସମୂଳେ ଧ୍ୱଂସ କରିଦେବା ସଙ୍ଗେ ସଙ୍ଗେ ଅନିନ୍ଦ୍ୟ ସୁନ୍ଦରୀ ବିଧବା ବ୍ରାହ୍ମଣୀ ଯୁବତୀଟିକୁ ବଳପୂର୍ବକ ନେଇ ଗୁଣ୍ଡିରେ ରଖାଇଥିଲା । ତାହାରି ଠାରୁ ସାଲବେଗ ଜନ୍ମ ହୋଇଥିଲେ । ଘଟଣା କ୍ରମେ ସେ ପିତା ଲାଲବେଗ୍‌ଙ୍କଠାରୁ ବିଚ୍ଛିନ୍ନ ହୋଇ ଦୈବ ଦୁର୍ଯ୍ୟୋଗରେ ପଡ଼ି ସାଂଘାତିକ ରୋଗାକ୍ରାନ୍ତ ହୋଇଥିଲେ । ବ୍ରାହ୍ମଣୀମାତାର ଉପଦେଶରେ ସେ ଶ୍ରୀକୃଷ୍ଣ ତଥା ଶ୍ରୀଜଗନ୍ନାଥଙ୍କର ପରମଭକ୍ତ ହୋଇ ଉଠିଥିଲେ । ମାତାଙ୍କ ଠାରୁ ଅନୁଜ୍ଞା ମାଗି, ଶ୍ରୀକ୍ଷେତ୍ରରେ ରହି ଭଜନ କୀର୍ତ୍ତନ ଦ୍ୱାରା ନିଜ ଜନ୍ମ ଦୁଷ୍କୃତରୁ ମୁକ୍ତି ଲାଭ କରିବା ଲାଗି ଚେଷ୍ଟା କରି ଥିଲେ । ଖୁବ୍ ସମ୍ଭବତଃ ତାଙ୍କର ସେହି ଚେଷ୍ଟା ନିଃସ୍ୱାର୍ଥ ବ୍ୟର୍ଥତାରେ ପରିଣତ ହୋଇଥିବ । ସପ୍ତଦଶ ଶତାବ୍ଦୀରେ ହିନ୍ଦୁମାନଙ୍କ ରୂଢ଼ିବାଦ, ଦେବ ଦ୍ୱିଜଧ୍ୱଂସୀ ମୁସଲମାନଙ୍କ ପ୍ରତି ସେମାନଙ୍କ ମନରେ ପ୍ରତିହିଂସା ତଥା ମୋଗଲ ଶାସନ ପ୍ରତି ତୀବ୍ର ଘୃଣା ଉଗ୍ରତର ହୋଇ ଉଠିଥିବା ଅସମ୍ଭବ ନୁହେଁ । ବିଶେଷତଃ ଅତ୍ୟାଚାରୀ ମୋଗଲ ଔରସରୁ ଗୋଟିଏ ପତିତା ଓ ବିଧବା ଗର୍ଭଜାତ ପଠାଣ ନାମଧାରୀ ସାଲବେଗଙ୍କୁ ପୁରୀ ପଣ୍ଡାମାନେ ନିଶ୍ଚିତ ଭାବରେ ଘୃଣା କରୁଥିବେ । କେବଳ ଘୃଣା କାହିଁକି, ସେମାନେ ସାଲବେଗଙ୍କୁ ଛଦ୍ମବେଶୀ ଅତ୍ୟାଚାରୀ ରୂପେ ସନ୍ଦେହ କରି ନାନାପ୍ରକାର ନିର୍ଯ୍ୟାତନା କରୁଥିବେ । ତେଣୁ ସାଲବେଗ ଆକୁଳ କଣ୍ଠରେ ଗାଇଛନ୍ତି—

"ବାପ ମୋ ମୋଗଲ ପୁଅ ମାଆ ମୋ ବ୍ରାହ୍ମଣୀ ।
ଏ କୁଳେ ଜନ୍ମିଲି ହିନ୍ଦୁ ନଖାଏ ମୋ ପାଣି ॥

× × ×

ପିତା ମୋ ମୋଗଲ ବେଟା ମାତା ମୋ ବ୍ରାହ୍ମଣୀ ।
ହୀନକୁଳେ ଜାତ ମୁହିଁ ହିନ୍ଦୁ ନଛୁଏଁ ପାଣି ।

× × ×

ମାତା ତେଜ୍ୟା ପିତା ତେଜ୍ୟା ଆବର ତେଜ୍ୟା ଭାଇ ।
ସକଳ କୁଟୁମ୍ବ ତେଜ୍ୟା କରି ଗୋବନ୍ଦରେ ଧାଇଁ" ॥

(ଭକ୍ତକବି ସାଲବେଗ ଜୀବନୀ ଓ ପଦ୍ୟାବଳୀ ପୃ—୨୧)

ସାଲବେଗ ଭଜନର ଉକ୍ତ ସ୍ୱୀକାରୋକ୍ତିରୁ ବେଶ୍ ଧାରଣା କରିହୁଏ ଯେ, ସେ ହିନ୍ଦୁ ନୈଷ୍ଠିକ ଧର୍ମଧ୍ୱଜଙ୍କ ଦ୍ୱାରା ନିର୍ଯ୍ୟାତିତ ହୋଇଥିଲେ । କିନ୍ତୁ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ପ୍ରତି ଅଚଳା ଭକ୍ତି ତାଙ୍କ ମନମଧ୍ୟରେ ଜାଗ୍ରତ ହୋଇଥିବାରୁ, ସେ ଅତ୍ୟଧିକ ବିନମ୍ରୀ, ସୁଶୀଳ ତଥା ଧୈର୍ଯ୍ୟଶୀଳ ହୋଇ ଯାଇଥିଲେ । ତଥାପି ତାଙ୍କ ପ୍ରତି ଯେଉଁ ଦୁର୍ଭାବ ପ୍ରଦର୍ଶନ କରି ଯାଉଥିଲା, ତାହା ଅଜ୍ଞାତସାରରେ ତାଙ୍କ ପଦ୍ୟରେ ପ୍ରତିଫଳିତ ହୋଇ ଯାଇଛି ।

କେବଳ ସେତିକି ନୁହେଁ, ସାଲବେଗଙ୍କ ଭଜନ ମଧ୍ୟରେ ଆହୁରି କେତୋଟି ସୂଚନା ମଧ୍ୟ ମିଳିଛି । ସେଥିରୁ ସ୍ପଷ୍ଟ ଜଣାଯାଏ ଯେ, ସେ ଅଶେଷ କଷ୍ଟରେ କାଳାତିପାତ କରୁଥିଲେ—

"ଆହେ ନୀଳାଚଳ ବାସି ।
ଶୋକ ଜଳଧିରେ ଗଲି ଭାସି ॥

ବାରଣ ଭଯ୍ଯୁକ୍ତ ତାରଣ କର ହେ ଶଇଙ୍ଖ ପଞ୍ଚର ବାନା ।
ଆରତ ନାଶନ ଖଳ ବିନାଶନ ବାରେ ହୁଅ ବ୍ରଜହେଳା" ।।

ପୁରୀର ଖଳ ପ୍ରକୃତିର ଲୋକେ ସାଲବେଗଙ୍କ ଆଚରଣରେ ଆଦୌ ସନ୍ତୁଷ୍ଟ ନ ଥିଲେ । ସେ ଧର୍ମଧ୍ୱଜଙ୍କ ଦ୍ୱାରା ଅତ୍ୟାଚରିତ ହୋଇ ପୁରୀ ତ୍ୟାଗ କରି ବୃନ୍ଦାବନ ଚାଲିଯିବା ଲାଗି ମନସ୍ଥ କରିଥିଲେ । ସେତେବେଳକୁ ତାଙ୍କ ଜୀବନର ସଙ୍କଟାପନ୍ନ ହୋଇଯିବାର ସୂଚନା ମଧ୍ୟ ମିଳେ ।

"ଜୀବନରେ ଥିବ ଯେବେ ଯିବ ବୃନ୍ଦାବନ ।
ଦର୍ଶନ କରିବି ଯାଇ ଶ୍ରୀ ମଧୁସୂଦନ" ।।  ଇତ୍ୟାଦି

କିନ୍ତୁ ବୃନ୍ଦାବନରେ ସେ ବେଶୀଦିନ ରହି ପାରି ନ ଥିଲେ । ସେ ପୁରୀକୁ ଫେରି ଆସି ନୀଳାଚଳ ନାଥ ଦୀନବନ୍ଧୁ ଜଗନ୍ନାଥଙ୍କ ଧାମରେ ରହି ଶେଷ ନିଃଶ୍ୱାସ ତ୍ୟାଗ କରିବା ପାଇଁ ଶ୍ରୀ ଜଗନ୍ନାଥଙ୍କ କୃପାଭିକ୍ଷା କରି ଆକୁଳ କଣ୍ଠରେ ଗାଇଥିବେ—

"ଜଗନ୍ନାଥ ହେ କିଛୁ ମାଗୁ ନାହିଁ ମୁଁ ତୋତେ ।
ମାଗୁ ନାହିଁ ଧନ ମାଗୁ ନାହିଁ ଜନ
ମାଗୁଛି ଶରଧା ବାଲିରୁ ହାତେ ।।

\+ \+ \+

କହେ ସାଲବେଗ ଜାତିରେ ଯବନ,
ତୋ ଗୀର୍ଥେ ଯାଉ ଏ ପ୍ରାଣ" ।।

ଏହିପରି ଭାବରେ ଆର୍ତ୍ତି ନିବେଦନ ଜଣାଇ ସେ ଶ୍ରୀ ଜଗନ୍ନାଥଙ୍କ 'ଘୋଷଯାତ୍ରା' ଦେଖିବା କାମନାରେ ସୁଦୂର ପଥ ଅତିକ୍ରମ କରି

ବୃନ୍ଦାବନରୁ ପୁରୀ ଉଦ୍ଦେଶ୍ୟରେ ଯାତ୍ରା ଆରମ୍ଭ କରି ଦେଇଥିବେ । କିନ୍ତୁ ଘୋଷଯାତ୍ରା ବେଳକୁ ପୁରୀରେ ପହଞ୍ଚିବାର ଆଶା କୌଣସି ଅସୁବିଧା ବଶତଃ ଫଳବତୀ ହୋଇ ନ ଥିବାର ଆତଙ୍କରେ ସେ ଆତଙ୍କିତ ହୋଇ ଉଠିଥିବେ । କାରଣ 'ରଥଯାତ୍ରା' ବ୍ୟତୀତ ସେ ଅନ୍ୟ କୌଣସି ସମୟରେ ଶ୍ରୀ ଜଗନ୍ନାଥଙ୍କ ଦର୍ଶନ ପାଇବାର ଭରସା କରି ପାରି ନ ଥିଲେ । ତେଣୁ ପୁଣି ଥରେ ମନେ ମନେ ଚତୁର୍ଦ୍ଧା ମୂର୍ତ୍ତିଧାରୀ ଶ୍ରୀ ଜଗନ୍ନାଥଙ୍କୁ ସ୍ମରଣ କରି ସେ ପଥମଧ୍ୟରେ ଭାଇ ଗାଇ ବୁଲିଥିବେ—

"ଜଗବନ୍ଧୁ ହେ ଗୋସାଇଁ ।  
ତୁମ୍ଭ ଶ୍ରୀଚରଣ ବିନୁ ଅନ୍ୟ ଗତି ନାହିଁ ॥  
ସାତଶ ପଚାଶ କୋଶ ବାଟ ବଶୁ ନାହିଁ ।  
ମୋହ ଦିବା ଯାଏ ନନ୍ଦଘୋଷେ ଥିବ ରହି ॥

\+ \+ \+

କହେ ସାଲବେଗ ହୀନ ଜାତିରେ ଯବନ ।  
ଏହିମତେ ଆଜ୍ଞା ହେବ ଶିରୀବୃନ୍ଦାବନ ॥

କିମ୍ବଦନ୍ତୀରୁ ଯାହା ଜଣାଯାଏ—ସେହି ସମୟରେ ଠିକ୍ 'ଶରଧାବାଲି'ରେ ଶ୍ରୀ ଜଗନ୍ନାଥଙ୍କ ରଥ କୌଣସି କାରଣ ବଶତଃ ଅଟକି ରହିଥିଲା । ଉକ୍ତ ପ୍ରବର ସାଲବେଗ ଆସି ପୁରୀରେ ପହଞ୍ଚିବା ପରେ ପ୍ରଭୁଙ୍କ ରଥ ବୁଲିଥିଲା । ଏହି ଚମତ୍କାର ଦୃଶ୍ୟ ପରିଦର୍ଶନରେ ପୁରୀବାସୀ ବିଶେଷତଃ ସେବାଏତମାନଙ୍କ ମନରେ ସାଲବେଗଙ୍କ ପ୍ରତି ଶ୍ରଦ୍ଧା ଜାତ ହୋଇଥିବ ! ସେମାନେ ଭକ୍ତ ଶିରୋମଣିଙ୍କୁ 'ଶରଧାବାଲି' ଉପରେ ଖଣ୍ଡିଏ କୁଡ଼ିଆ କରି ରହିବାର ସୁଯୋଗ ଦେଇ ଥିବେ !

କଥିତ ଅଛି—ଜୀବନର ଅନ୍ତିମକ୍ଷଣ ପର୍ଯ୍ୟନ୍ତ ସାଲବେଗ ସେଇ 'ଶରଧାବାଲି'ରେ ରହି ଶ୍ରୀ ଜଗନ୍ନାଥଙ୍କର ଭଜନରେ କାଳ ଅତିବାହିତ

କିନ୍ତୁ ସାଲବେଗଙ୍କର କେଉଁଠି ହେଲେ କୁଳମୂଳ ନଥିଲା କିମ୍ବା କୌଣସି ସ୍ଥାନରେ ତାଙ୍କର ବାସଭୂମି ଥିବାର ମଧ୍ୟ ପ୍ରମାଣ ମିଳେ ନାହିଁ । ସେ ଇସଲାମ୍ ଧର୍ମାବଲମ୍ବୀ ପିତାର ପୁତ୍ର ହୋଇ, ହିନ୍ଦୁମାନଙ୍କ ଦେବ ଦେବୀ ପ୍ରତି ଭକ୍ତି କରୁଥିବାରୁ, ଓଡ଼ିଶାରେ ବାସ କରୁଥିବା ମୁସଲମାନ ମାନଙ୍କ ଦ୍ୱାରା ବିଶେଷତଃ ମୋଗଲ ଶାସକଙ୍କ ଦ୍ୱାରା ଘୃଣ୍ୟ ବୋଲି ବିବେଚିତ ହୋଇଥିବେ । ମୋଗଲ ଔରସରୁ ତଥା ଗୋଟିଏ ପତିତା ବିଧବା ଗର୍ଭରୁ ଜାତ ହୋଇଥିବାରୁ, ସେତେ ଧର୍ମନିଷ୍ଠ ହେଲେ ହେଁ ସେ ହିନ୍ଦୁମାନଙ୍କର ଆଦୌ ବିଶ୍ୱାସପାତ୍ର ହୋଇ ନଥିବେ ! ତେଣୁ ସାଲବେଗ ସବୁଦିଗରୁ ସାହାଭରସା ହରାଇ ନୀଳାଚଳନାଥ ଶ୍ରୀଜଗନ୍ନାଥଙ୍କ ଚରଣରେ ନିଜକୁ ଅର୍ପଣ କରି ଦେଇଥିଲେ । କିନ୍ତୁ ସାମାଜିକ ଆବେଷ୍ଟନୀର ସ୍ତୂପରେ ସେ ଅତିଷ୍ଠ ହୋଇ ଉଠିଥିଲେ । ତେଣୁ ସେ ନିଜର ଜନ୍ମ କଳଙ୍କକୁ ଉଦାର ଭାବରେ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ପ୍ରଭୁଙ୍କ ଠାରେ ଗୁହାରି ଜଣାଇ କହିଥିଲେ—

"ମୁଁ ଅବା ଅପ୍ରାଧୀ ହେ କୃପାବାରିଧି
ଥରେ ନୋହିଲି କରୁଣା ।
କହେ ସାଲବେଗ ପ୍ରଭୁପଣକୁ ଏ
ହଣିବ ବହୁତ ଊଣା" ।

ଏହି ପରିପ୍ରେକ୍ଷୀରେ, ଭକ୍ତକବି ସାଲବେଗ ଶ୍ରୀଜଗନ୍ନାଥଙ୍କୁ 'ଶରଧାବାଲିରୁ ହାତେ' ମାଗିବା ଯୁକ୍ତିସଙ୍ଗତ ହୋଇପାରେ ।

ସାଲବେଗ ଓ ବନମାଳୀ ଉଭୟ ଶ୍ରୀକୃଷ୍ଣ ଓ ଶ୍ରୀଜଗନ୍ନାଥଙ୍କ ଅନନ୍ୟଭକ୍ତ ରୂପେ ପ୍ରସିଦ୍ଧି ଲାଭ କରିଥିଲେ । ଉଭୟ କବିଙ୍କ ରଚନାଦ୍ୱାରା ଓଡ଼ିଆସାହିତ୍ୟର ଭକ୍ତିଧାରା ଫେନିଳ ତଥା ତରଙ୍ଗାୟିତ ହୋଇ ପାରିଛି । କିନ୍ତୁ ସମୟର ବ୍ୟବଧାନ ଦୃଷ୍ଟିରୁ ଜଣେ କବିଙ୍କ ରଚନାର ପ୍ରଭାବ ଅନ୍ୟଜଣକ ଉପରେ ପଡ଼ିବାରେ ଆଦୌ ଆସ୍ୱାଭାବିକତା

ନାହିଁ । ଏହା ଏକଳକାର ପରମ୍ପରା । ସାଲବେଗ ଓ ବନମାଳୀ ତ ଗୋଟିଏ ସ୍ଥାନରେ ରହି ଗୋଟିଏ ପ୍ରକାର ଭାବଧାରା ଉପରେ କବିତା ରଚନା କରିଛନ୍ତି; ଭିନ୍ନଭିନ୍ନ ଅଞ୍ଚଳର କବିମାନଙ୍କ ରଚନାରେ ମଧ୍ୟ ଏ ପ୍ରକାର ପ୍ରଭାବ ଅନସ୍ୱୀକାର୍ଯ୍ୟ ।

ଆହୁରି ମଧ୍ୟ ଜଣାଯାଏ ଯେ, ସାଲବେଗଙ୍କ ନାମରେ ଭଣିତ କେତେକ ପଦ୍ୟ ରଘୁ ଅରକ୍ଷିତଙ୍କ ନାମରେ ଭଣିତ ହୋଇଛି । ବନମାଳୀଙ୍କ ରଚନା ମଧ୍ୟ ରଘୁ ଅରକ୍ଷିତଙ୍କ ନାମରେ ଭଣିତ ହୋଇଥିବାର ମିଳୁଛି । ସମସ୍ତଙ୍କର ସ୍ରୋତରେ କେଉଁ ଗାୟକ ଅଥବା ନକଲକାରଙ୍କ ଦ୍ୱାରା ଏହା ହୋଇଥିବା ଅସମ୍ଭବ ନୁହେଁ । ଆଲୋଚକମାନଙ୍କର ଦାୟିତ୍ୱ ହେଉଛି— ସେ ଗୁଡ଼ିକର ପ୍ରକୃତ ସ୍ୱରୂପ ଜନସାଧାରଣଙ୍କ ଆଗରେ ଉପସ୍ଥାପିତ କରିବା । ଏଥିରେ ଭାବପ୍ରବଣତାର ସ୍ଥାନ ନାହିଁ କିମ୍ବା ସତ୍ୟକୁ ଗୋପନ କରିବାର ଅଭିସନ୍ଧି ନାହିଁ । ଏ ସମ୍ବନ୍ଧରେ ଯେତେ କିଛି ନିରପେକ୍ଷ ଆଲୋଚନା ହେବ, ପାଠକ ତଥା ପରବର୍ତ୍ତୀ ଆଲୋଚକମାନେ ସେତିକି ଉପକୃତ ହେବେ, ସନ୍ଦେହ ନାହିଁ ।

-- ❋ --

# ଉପସଂହାର

କବି ବନମାଳୀଙ୍କ ରଚନାରେ ଯେଉଁ ଭକ୍ତିଧାରାର ପ୍ରଚାର କରା ଯାଇଛି, ତାହା ହେଉଛି ଓଡ଼ିଶୀ ବୈଷ୍ଣବୀ ଚେତନା ଦ୍ୱାରା ପରିପୁଷ୍ଟ ! ଏହି ଚିନ୍ତାଧାରାର ଜନକ ହେଉଛନ୍ତି 'ଗୀତଗୋବିନ୍ଦ'ର ପ୍ରଣେତା ଜୟଦେବ । 'ଗୀତଗୋବିନ୍ଦ'ର ଦଶାବତାର ପ୍ରକରଣରେ ସେ ଯେଉଁ 'ଜଗଦୀଶ'ଙ୍କୁ ଆରାଧନା କରିଛନ୍ତି, ତାହା ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଉଦ୍ଦେଶ୍ୟରେ ଅଭିପ୍ରେତ । 'ଜୟଜଗନ୍ନାଥ ହରେ' ସେ ଲେଖିଥିଲେ ଛନ୍ଦ ରକ୍ଷାକରାଯାଇ ପାରି ନଥାନ୍ତା; ତେଣୁ ସେ 'ଜଗଦୀଶ' ପଦ ବ୍ୟବହାର କରିଛନ୍ତି ।

ଜୟଦେବଙ୍କ ଚିନ୍ତାଧାରା ଆହୁରି ବିକଶିତ ହୋଇଥିଲା- ସାରଳା ଦାସଙ୍କ ରଚନାରେ । ସେ ଗୋପୀଜନବଲ୍ଲଭ କୃଷ୍ଣ, ଦ୍ୱାରକାଧୀଶ କୃଷ୍ଣ ଓ ଶ୍ରୀଜଗନ୍ନାଥଙ୍କ ମଧ୍ୟରେ ଅଭେଦ କଳ୍ପନା କରିଛନ୍ତି ।

ତତ୍ପରବର୍ତ୍ତୀ କାଳରେ ଗଜପତି ପୁରୁଷୋତ୍ତମଙ୍କ ନାମରେ ରଚିତ 'ଅଭିନବ ଗୀତ ଗୋବିନ୍ଦ'ରେ ଏହି ଚିନ୍ତାଧାରା ଆହୁରି ସୁସ୍ପଷ୍ଟ ହୋଇ ପାରିଛି । କବି 'ଅଭିନବ ଗୀତ ଗୋବିନ୍ଦ'ର ଦଶାବତାର ବର୍ଣ୍ଣନାରେ ନୀଳଗିରିପତିମଚ୍ୟୁତମ୍‌ଙ୍କୁ ସ୍ତୁତି କରି ଶ୍ରୀଜଗନ୍ନାଥଙ୍କୁ ଦଶାକୃତିକୃତ୍ ରୂପେ କଳ୍ପନା କରିଛନ୍ତି । ସେ ଆହୁରିମଧ୍ୟ ଅଷ୍ଟମ ଓ ନବମ ଅବତାର ରୂପେ ବଳରାମ ଓ ବୁଦ୍ଧଙ୍କ ସ୍ଥାନରେ ବଳରାମ ଓ ଶ୍ରୀକୃଷ୍ଣଙ୍କ ସ୍ତୁତିପାଠ କରିଛନ୍ତି—

"ଲାଙ୍ଗଳାୟୁଧକୋଟିଦର୍ଶିତ ନାଗସାଦ୍ୱୟସଙ୍ଘୂର୍ଣ୍ଣନଂ ।
ମୁଷ୍ଟିପାତନିବର୍ହିତମଲ ପ୍ରଲମ୍ବାସୁରଚୂର୍ଣ୍ଣନମ୍ ॥
ନମତ ହଳଧରରୂପମଦ୍ଭୁତମଖିଳମୁନିଜନ—ବନ୍ଦିତଂ ।
ଜନନପାଳନନାଶକାରଣନୀଳଗିରିପତିମଚ୍ୟୁତମ୍ ॥
ଗୋପଗୋକୁଳରକ୍ଷଣକ୍ଷଣଧାରିତାତୁଳ ଭୂଭୃତଂ ।
ନୀଳମଣିମୟଦଣ୍ଡସଙ୍ଗତମାତପତ୍ରମିବୋଦ୍ଧୃତମ୍ ॥
ନମତ କଂସାସୁର ନିସୂଦନ-ମଖିଳମୁନିଜନ ବନ୍ଦିତଂ

ଜନନ-ପାଳନ-ନାଶକାରଣ-ନୀଳଗିରିପତି ମ ଚ୍ୟୁତମ୍ ।।

× × ×

ନୀଳଗିରିପତିଚରଣସରସିଜମତ୍ତମଧୁକରରୂପିଣା ।
ଇତିତମେତତ୍ ପୁରୁଷୋତ୍ତମ-ଭୂପକାମନ୍ତଚ୍ଛୁରଣା ।।
ନମତ ଦଶବଧରୂପମଭ୍ରଚମଖିଳମୂନିଜନବନ୍ଦିତଂ
ଜନନ-ପାଳନ—ନାଶ କାରଣ-ନୀଳଗିରି ପତିମଚ୍ୟୁତମ୍ ।।

( ଶ୍ରୀଭଗବାନ ପଣ୍ଡାଙ୍କ ଦ୍ୱାରା ସମ୍ପାଦିତ ରାଜ୍ୟସାହିତ୍ୟିକ
ବ୍ୟାପାର ବିଭାଗ ଦ୍ୱାରା ପ୍ରକାଶିତ ଅଭିନବ
ଗୀତ ଗୋବିନ୍ଦ )

'ମୁକୁନ୍ଦବିଳାସ' ଶୀର୍ଷକ ଅନ୍ୟତମ ଗୀତକାବ୍ୟରେ କବି ଉଦ୍ଧୃତ ଶ୍ଳୋକ ଆହୁରି ଟିକିଏ ଅଗ୍ରସର ହୋଇ, ସୃଷ୍ଟିର ଆଦ୍ୟ ପ୍ରକୃତି ପୁରୁଷ; ବ୍ରହ୍ମା ବିଷ୍ଣୁ ମହେଶ୍ୱର, ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ତଥା ବୃନ୍ଦାବନରେ ଲୀଳାବିଳାସୀ ଶ୍ରୀକୃଷ୍ଣଙ୍କ ମଧ୍ୟରେ ଅଭେଦ କଳ୍ପନା କରି 'ଓଡ଼ିଶୀ ବୈଷ୍ଣବୀ ଭକ୍ତିଧାରା'ର ମାର୍ଗ ପ୍ରଶସ୍ତ କରାଇଛନ୍ତି ।

"ଯୋ ଦ୍ୱେଧା ପ୍ରକୃତିଃ ପୁମାନିତିମତଃ ସ୍ତ୍ରୀପୁଂସଦେହାଶ୍ରିତୋ
ଯସ୍ତ୍ରେଧା ବିଧିବିଷ୍ଣୁଶଙ୍କର ବପୁର୍ଦ୍ଧାଶ୍ଚ ଦଶଦୃଶ୍ୟତେ ।।
ଶ୍ରୀମନ୍ନୀଳଗିରୌ ଚ ଦାରୁତନୁଧୃଗ୍ ଯୋଽସୌ ଚତୁର୍ଦ୍ଧାସ୍ଥିତୌ ।
ରାଧା କୃଷ୍ଣତନୁଧରୋ ବ୍ରଜପୁରେ ବୃନ୍ଦାବନେ ସ ପ୍ରଭୁଃ" ।।

ଏହି ଚିନ୍ତାଧାରାର ପରିପୋଷକ ଥିଲେ ଭକ୍ତକବି ସାଲବେଗ । ସେ ମଧ୍ୟ ତାଙ୍କର ଗୀତାବଳୀର ବହୁସ୍ଥଳରେ ଶ୍ରୀଜଗନ୍ନାଥ ତଥା ଶ୍ରୀକୃଷ୍ଣଙ୍କ ମଧ୍ୟରେ ଐକ୍ୟଭାବର ଉଦାହରଣ ପ୍ରସ୍ତୁତ କରିଛନ୍ତି—

“ଶ୍ୟାମସୁନ୍ଦର, ଜଗବନ୍ଧୁ ବିଜେ ନୀଳକନ୍ଦରେ ।
ଏ ପର ଗୋପରେ ଗୋରୁଙ୍କ ପଛରେ ବୁଲୁଥିଲେ ବନକନ୍ଦରେ ।।

× × ×

ଏଣୁ ଜଗନ୍ନାଥ ଗୋପପୁରେ ।
ବଛା ରଖିଥିଲେ ନନ୍ଦଘରେ ।।
ଇନ୍ଦ୍ର ବିବାଦରୁ ଅଷ୍ଟମଲ୍ଲ ମାରି,
ଗିରି ଟେକିଥିଲେ ବାମକରେ ।
ଆହେ ଗୋପପୁରେ ।।

\+ \+ \+

ସୁନ୍ଦର ବଦନ ପଙ୍କଜଡୋଳା ।
ଦରଶନେ ନଜର ହେଲା ।।
କର୍ଣ୍ଣରେ କୁଣ୍ଡଳ ଗଳେ ରତ୍ନହାର ଚଉସରି ହୋଇ ଲମ୍ବିଛି ମାଳା ।
ଯମୁନା ନଦୀକ ନାବ ଖେଳି ଗଲେ ପାରି କରିଦିଅ ନନ୍ଦର ବଳା ।।
ଲକ୍ଷେ ରଜାମୁଖେ କାଳି ଲଗାଇଲ
ସାତ ବେଣ୍ଟିକଲ ସହୋଦ୍ର ଶଳା ।
ଜଗନ୍ନାଥ ପ୍ରଭୁ ନୀଳାଞ୍ଚଳେ ବିଜେ,
ଆଉ ଏଡ଼େ ପ୍ରଭୁ ନୋହିବେ ପର ।।

\+ \+ \+

ନୀଳାଞ୍ଚଳେ ଦାରୁସ୍ୱରୂପ ବିଜେସ୍ଥ,
ନାମ ସଙ୍କୀର୍ତ୍ତନେ ହୋଇଲେ ହେଳା ।
କହେ ସାଲବେଗ ଜାତିରେ ଯବନ
ଭବସାଗରକୁ ମୋ ନାମ ଭେଳା” ।।

ଏହି କବିପରମ୍ପରାର ଧାରାନୁସରଣ କରି ଭକ୍ତକବି ବନମାଳୀ ନିଜ ଭକ୍ତିଧାରାର ଶାଶ୍ୱତପ୍ରବାହ ସ୍ୱକୀୟଭାବେ ପ୍ରବାହିତ କରାଇଛନ୍ତି । ଶ୍ରୀକ୍ଷେତ୍ରର ଅଧିବାସୀ ହୋଇଥିବା ଦୃଷ୍ଟିରୁ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ପ୍ରତି ତାଙ୍କର ଅଚଳା ଭକ୍ତି ଥିଲା । କିନ୍ତୁ ଖୁବ୍ ସମ୍ଭବତଃ ତାଙ୍କ ପରିବାରର ଇଷ୍ଟଦେବ ଥିଲେ ଶ୍ରୀରାଧାମଦନମୋହନ । ପ୍ରାଚୀନ କବିମାନଙ୍କ ପରମ୍ପରା, ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ମହିମା ତଥା ପାରିବାରିକ ପ୍ରଭାବ ଫଳରେ ସେ ବ୍ରଜରାଜନନ୍ଦନ, ଶ୍ରୀମଦ୍ଗୋପୀଭର୍ତ୍ତୃକନ୍ଦର୍ପନବଜଳଧର, ନିତ୍ୟ ସତ୍ୟ ପୂର୍ଣ୍ଣାନନ୍ଦ ଯଶୋଦା କୁମର ଶ୍ରୀକୃଷ୍ଣଙ୍କ ସହିତ ଦଶାକୃତିକୃତ୍ ପୂର୍ଣ୍ଣବ୍ରହ୍ମ ଶ୍ରୀଜଗନ୍ନାଥଙ୍କ ଅଭେଦ କଳ୍ପନା କରି ପାରିଛନ୍ତି । ତାଙ୍କ ପ୍ରଭୁ କଳା ଶ୍ରୀମୁଖ ଜଗନ୍ନାଥ ଏବଂ ଶ୍ୟାମସୁନ୍ଦର ଶ୍ରୀକୃଷ୍ଣଙ୍କ ମଧ୍ୟରେ ସେ କୌଣସି ପ୍ରକାର ପାର୍ଥକ୍ୟ ଥିବାର ଲକ୍ଷ୍ୟ କରିନାହାନ୍ତି । ବରଂ ତାଙ୍କ ଶ୍ୟାମନାଗର ଚକା-ଡୋଳା ଚକ୍କଣ କାଳିଆ ହେବା ସଙ୍ଗେ ସଙ୍ଗେ ବିହାରି, ଦୀନବାନ୍ଧବ, ଦ୍ରୌପଦୀର ଲଜ୍ଜା ନିବାରଣ–କାରୀ, ରଘୁବଂଶଗୌରବ, କେଶବ ପ୍ରଭୃତି ବିଭିନ୍ନ ଭାବରେ ତାଙ୍କ ଭଜନରେ ପ୍ରକଟିତ ହୋଇଛନ୍ତି । ଓଡ଼ିଶାର ବୈଷ୍ଣବମାନେ ଯେଉଁ ଭକ୍ତିଧାରାର ପ୍ରବାହ ଜୟଦେବଙ୍କ ସମୟରୁ ପ୍ରବାହିତ କରି ଆସିଛନ୍ତି, ସେଥିରେ ବନମାଳୀଙ୍କ ଭକ୍ତିଧାରା ମିଶିଯାଇ ଏକାକାର ହୋଇଯାଇଛି । ବନମାଳୀଙ୍କର ସେହି ଚିନ୍ତାଧାରା ତାଙ୍କର ବହୁ ପଦ୍ୟରେ ପ୍ରତିଫଳିତ ହୋଇଛି ।

'ବନମାଳୀ-ପଦ୍ୟାବଳୀ'ରେ ସମ୍ପାଦିତ ପଦ୍ୟ ଗୁଡ଼ିକ ବ୍ୟତୀତ ତାଙ୍କ ନାମରେ ଭଣିତ ଆହୁରି ଅନେକ ପଦ୍ୟ ଆଲୋଚକମାନଙ୍କ ଅଗୋଚରରେ ରହିଥିବା ଅସମ୍ଭବ ନୁହେଁ । ବିଶେଷତଃ ବୈଷ୍ଣବ ହେବାପରେ ସେ ବଲ୍ଲଭାନନ୍ଦ ନାମରେ କଥିତ ହୋଇଥିଲେ । ବଲ୍ଲଭ, ବଲ୍ଲଭ ଦାସ, ବଲ୍ଲଭାନନ୍ଦ ନାମରେ ଭଣିତ ବହୁ ଚଉପଦୀ ଥିବାର ଦେଖାଯାଏ । ଚରଣ ଦାସଙ୍କ ନାମରେ କବି ବନମାଳୀ ଗୀତ ରଚନା କରିଥିବାରୁ, ସେହି ଧରଣର କେତୋଟି ଗୀତ ମଧ୍ୟ ଆମର ଅଗୋଚରରେ ରହିଥିବା ଅସମ୍ଭବ ନୁହେ ବିଶେଷତଃ ପଦ୍ୟାବଳୀରେ ପ୍ରଦତ୍ତ "ଗୃହିଁଦେଲି କଅଁତରେ—" ଗୀତରୁ

ଜଣାଯାଏ ଯେ, କବି ବନମାଳୀ ନିଜ ବନ୍ଧୁ ଚରଣ ଦାସଙ୍କ ନାମରେ ଗୋଟିଏ ଗୀତ ଭଣିତା କରିଥିଲେ । ଓଡ଼ିଆ ସାହିତ୍ୟ ଜଗତରେ ଚରଣ-ଦାସଙ୍କ ନାମରେ କେତେକ ଚଉପଦୀ ଭଣିତା ହୋଇଥିବାର ଦେଖାଯାଏ । ସେ ସମସ୍ତ ରଚନା ବନମାଳୀ ପଟ୍ଟନାୟକଙ୍କର କି ନୁହେଁ, ଏ ବିଷୟରେ ପୁଙ୍ଖାନୁପୁଙ୍ଖ ଆଲୋଚନା ଅଦ୍ୟାପି ହୋଇନାହିଁ । ପଦ୍ୟାବଳୀ ପ୍ରଣେତା ବନମାଳୀଙ୍କର ପ୍ରତିଭା ପ୍ରତି ଲକ୍ଷ୍ୟ କଲେ ନିଶ୍ଚିତ ଭାବରେ ଧାରଣା କରିଯାଏ, ସେ ଜଣେ କୃତବିଦ୍ୟ କବି ଥିଲେ । ତାଙ୍କ ସମ୍ବନ୍ଧରେ ଅଦ୍ୟାପି ଯେତିକ ଆଲୋଚନା ହୋଇଛି, ତାହା ଯଥେଷ୍ଟ ବୋଲି ମନେ ହୁଏ ନାହିଁ । ବିଶେଷତଃ ତାଙ୍କ ଦ୍ୱାରା ଲିଖିତ ଆଉ କୌଣସି ସମ୍ପୂର୍ଣ୍ଣ କାବ୍ୟ ଅଛି କି ନାହିଁ ସେ ସମ୍ବନ୍ଧରେ ମଧ୍ୟ ଅନୁସନ୍ଧାନ କରାଯାଇନାହିଁ ।

ଓଡ଼ିଆ ସାହିତ୍ୟରେ ଏକାଧିକ ବନମାଳୀ ନାମଧାରୀ କବି ମିଳୁଛନ୍ତି । ତନ୍ମଧ୍ୟରେ ରଣପୁର ନିବାସୀ ବନମାଳୀ ଜେନା ଷୋଡ଼ଶ ଶତାବ୍ଦୀର ଶେଷଭାଗରେ 'ବନମାଳୀ-ରାସ' ଶୀର୍ଷକ ଏକ ବିରାଟ ଗ୍ରନ୍ଥ ଲେଖିଥିଲେ । ସେଥିରେ ହରିବଂଶ ଓ ଭାଗବତରେ ବର୍ଣ୍ଣିତ ରାସଲୀଳାର ବର୍ଣ୍ଣନା ବିସ୍ତୃତ ଭାବରେ କରାଯାଇଥିଲେ ହେଁ, ରାଗରାଗିଣୀର ପ୍ରୟୋଗ ନିତାନ୍ତ ସୀମିତ । କବି ବନମାଳୀ ଦାସ ମୂଳରୁ ଶେଷ ପର୍ଯ୍ୟନ୍ତ ଗୋଟିଏ ଛନ୍ଦରେ ପୁସ୍ତକଟି ଶେଷ କରିଛନ୍ତି । କବି ବନମାଳୀ ଜେନା ଏତେ ବଡ଼ ବିରାଟ ପୁସ୍ତକଟିଏ ଶ୍ରୀକୃଷ୍ଣଙ୍କ ଲୀଳା ବର୍ଣ୍ଣନାରେ ଶେଷ କରିଥିଲେ ହେଁ, ପ୍ରଥମେ ନୀଳଗିରି ନାଥ ଶ୍ରୀଜଗନ୍ନାଥଙ୍କୁ ସ୍ତୁତି କରିଛନ୍ତି ।

ବନ୍ଦଇ ନୀଳଗିରିସୁନ୍ଦର ଜଗନ୍ନାଥ,
ଯାହାର ଲୀଳା ଅଂଶୁ ଥାପନା ଏ ଜଗତ ॥
ଆଶେଷ ସୁଖଧାମ ପରମ ସୁଖଭୋଳେ,
ଦାରୁବ୍ରହ୍ମ ସ୍ୱରୂପେ ବିଜୟ ଆଦିମୂଳେ ॥"

(ବନମାଳୀ ରାସ, ପ୍ରଥମ ଛାନ୍ଦ)

ସେ ପୁସ୍ତକର ଆରମ୍ଭରେ ଶ୍ରୀଜଗନ୍ନାଥ ଓ ଶ୍ରୀକୃଷ୍ଣଙ୍କ ମଧ୍ୟରେ ଅଭେଦ କଳ୍ପନା କରି କୃଷ୍ଣଲୀଳା ରଚନା କରିବାକୁ ମନ ବଳାଇ ଥିବାର ଉଲ୍ଲେଖ କରିଛନ୍ତି । ତାଙ୍କ ରଚନାରେ ବହୁ ପ୍ରାଚୀନ ପଦ ପ୍ରୟୋଗ ହୋଇଥିବାର ଦେଖାଯାଏ । ସେ ଶ୍ରୀକୃଷ୍ଣଙ୍କ ଲୀଳାର ପ୍ରତ୍ୟେକ ଅଂଶକୁ ବାସ୍ତବ ଭାବରେ ବର୍ଣ୍ଣନା କରିଛନ୍ତି । ପ୍ରାକୃତିକ ଶୋଭା ବର୍ଣ୍ଣନାରେ କବି ବନମାଳୀ ଜେନା ବିଶେଷ ଦକ୍ଷତା ଦେଖାଇଛନ୍ତି । ତାଙ୍କ ରଚନା ସମ୍ବନ୍ଧରେ ମଧ୍ୟ ଅଦ୍ୟାପି ବିଶେଷ ଆଲୋଚନା କରାଯାଇନାହିଁ ।

ବନମାଳୀ ସାମନ୍ତରାୟ ବା ଦ୍ୱିଜ ବନମାଳୀ ପଦାବଳୀର ରଚୟିତା ବନମାଳୀଙ୍କର ପରବର୍ତ୍ତୀ କବି ବୋଲି ମନେହୁଏ । ସେ ରଚନାର ମାଧ୍ୟମ ରୂପେ ବଙ୍ଗଳା ମିଶା ଓଡ଼ିଆକୁ ଗ୍ରହଣ କରିଥିଲେ ହେଁ, 'ବଡ ଉଦ୍ଧବ-ଚଉତିଶା' ପ୍ରଭୃତି କେତେକ ରଚନା ତାଙ୍କର ବୋଲି ଅନୁମାନ କରାଯାଏ । କିନ୍ତୁ ସେ ନିଜର ବାସସ୍ଥାନ ସମ୍ପର୍କରେ ସ୍ପଷ୍ଟ ସୂଚନା ଦେଇଥିବାରୁ ସେ ଯେ ରସପ୍ରଣେତା ଓ ପଦ୍ୟାବଳୀ ପ୍ରଣେତାଙ୍କ ଠାରୁ ଭିନ୍ନ, ଏଥିରେ ସନ୍ଦେହର ଅବକାଶ ରହେ ନାହିଁ । କିନ୍ତୁ ଆଲୋଚନମାନଙ୍କ ପକ୍ଷରେ ବର୍ତ୍ତମାନ ସବୁଠାରୁ ଅସୁବିଧାର ବିଷୟ ହେଉଛି, କୌଣସି ପ୍ରକାର ସୂଚନା ନ ଥାଇ ଯଦି ନୂତନ ଗୀତ ମିଳେ, ତା'ହେଲେ ଆଲୋଚକମାନେ ଗୀତଟିକୁ କେଉଁ ବନମାଳୀଙ୍କ ନାମରେ ଅଭିହିତ କରିବେ ?

ଉଦାହରଣ ସ୍ୱରୂପ ନିମ୍ନଲିଖିତ ଗୀତ ଦୁଇଟିକୁ ନିଆଯାଇ ପାରେ ।

"ଶ୍ୟାମମଦରଶନେ କୁଳଶୀଳ ଲୋଟିଗଲା ଲୋ !
ମଞ୍ଜିଷ୍ଠା ପରାୟେ ହୋଇ,
ଲାଗିଲେ ଛାଡ଼ଇ ନାହିଁ ।
ସେହିପରି ହୃଦୟକୁ ଘୋଟିଗଲା ଲୋ ।
ଶୁଣି ଶୁଣି ହେଲା ତୋଷ ନାହିଁ ମୋର ଭେକଶୋଷ,
ଜାଣୁଛି କେତେ କଠୋର କାଟିଗଲା ଲୋ ।

ଯାର ନେହ ପରବଶ        ତାର ଜୀବନେ କ ଆଶ,
ବାଉଳ ତା ବନମାଳୀ ଉଟିଲ ଲେ !
(ବିଦଗ୍ଧ ସଙ୍ଗୀତ, ରାଜ୍ୟସଂଗ୍ରହାଳୟସ୍ଥ ପୋଥି, Cy/534)

×        ×        ×

ଦେଖିଲେ ନୋହିବ ତୋର ରେ,
ମୋହନ ତୋର ।
ବାସ ବଇଚନରେ ରାମା,
ବାସ ବଇଚନ ।
ବନ୍ଧୁ ଦେବ ଦେବ ବାସବଇଚନ ରେ ॥
ସତେ ଦେବ ତାଙ୍କୁରେ ରାମା,
ସତେ ଦେବ ତାଙ୍କୁ ।
ଗୁଣବ କେ ଦେବାଦେବୀ
ଶତେ ଦେବତାଙ୍କୁ ॥
ଉତପ୍ତେ ଗୋକୁଳେ ରେ ରାମା,
ଉତପ୍ତେ ଗୋକୁଳେ ।
ବରତ କେ ଯିବ ଆଉ
ସ୍ୱତପ୍ତେ ଗୋକୁଳେ ॥
ବନମାଳୀ ଚନ୍ଦ୍ରେ ରେ ରାମା,
ବନମାଳୀ ଚନ୍ଦ୍ରେ ।
ନିବାସ ନ କଲେ ଯେଣୁ
ବନମାଳୀ ଚନ୍ଦ୍ରେ ରେ ॥
(ରାଜ୍ୟସଂଗ୍ରହାଳୟସ୍ଥ ପୋଥି-Cy/534 )

ସୁଖର କଥା, ତିନଜଣ ଯାକ ବନମାଳୀ ଅର୍ଥାତ୍ ବନମାଳୀ ଜେନା, ବନମାଳୀ ପଟ୍ଟନାୟକ ଓ ବନମାଳୀ ସାମନ୍ତରାୟ ପୁରୀଜିଲ୍ଲାର ଅଧିବାସୀ ଏବଂ ତିନଜଣ ଯାକ ଶ୍ରୀକୃଷ୍ଣଙ୍କ ମଧୁମୟଲୀଳାକୁ ପ୍ରକଟ କରିବା

ଉଦ୍ଦେଶ୍ୟରେ ଗ୍ରନ୍ଥ ରଚନା କରିଅଛନ୍ତି । ଡିନିଜଣଙ୍କ ମଧ୍ୟରୁ ବନମାଳୀ ଜେନା ଓ ପଟ୍ଟନାୟକ ଶ୍ରୀଜଗନ୍ନାଥ ଓ ଶ୍ରୀକୃଷ୍ଣଙ୍କ ଅଭେଦ କଳ୍ପନା କରି ଓଡ଼ିଶୀ ବୈଷ୍ଣବଧାରାର ଅନ୍ତରାଳରେ ନିଜନିଜର ରଚନା ମାନ ପ୍ରସ୍ତୁତ କରିଛନ୍ତି, କିନ୍ତୁ ବନମାଳୀ ସାମନ୍ତରାୟ ଗୌଡ଼ୀୟ ଚିନ୍ତାଧାରାର କବି ହୋଇ ଥିବାରୁ ତାଙ୍କ ରଚନାରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ବର୍ଣ୍ଣନା ଦେଖିବାକୁ ମିଳେ ନାହିଁ ।

ତିନିଜଣ ଯାକ ବନମାଳୀଙ୍କ ମଧ୍ୟରେ ଅଦ୍ୟାପି ବନମାଳୀ ପଟ୍ଟନାୟକଙ୍କ ରଚନା ଜନସମାଜରେ ସୁପ୍ରଚଳିତ ହୋଇ ପାରିଛି । ଭାଷା, ଭାବ ଓ ଶୈଳୀର ଯେଉଁ ଅଭିନବ ସ୍ପନ୍ଦନ ତାଙ୍କ ରଚନାରେ ମିଳେ, ତାହାହିଁ ତାଙ୍କୁ ଜନମାନସରେ ଶ୍ରେଷ୍ଠ ଆସନ ଦେଇ ପାରିଛି । ତାଙ୍କ ପଦ୍ୟାବଳୀରେ ନିହିତ ଛନ୍ଦର କାଞ୍ଚନସ୍ପର୍ଶରେ ଓଡ଼ିଶାର ବିଦଗ୍ଧସମାଜ ବିମୁଗ୍ଧ । ତାଙ୍କ ରଚନା ଆଜି ପ୍ରତ୍ୟେକ ଓଡ଼ିଆ ପରିବାରରେ ଆଦରଣୀୟ ପଦ୍ୟ ରୂପେ ଗାନ କରାଯାଉଛି । ଏହାହିଁ ତାଙ୍କ ରଚନାର ବୈଶିଷ୍ଟ୍ୟ । ତାଙ୍କର ଭାଷାରେ କହିବାକୁ ଗଲେ ବନମାଳୀଙ୍କ ରଚନା ପ୍ରତ୍ୟେକ ଓଡ଼ିଆର 'କଣ୍ଠତଟ ରତ୍ନମଣି' ସ୍ୱରୂପ ହୋଇ ପାରିଛି ।

